# ଧ୍ୱଂସମୁଖୀ ଆର୍ଥିକ ସଂସ୍କାର ବିରୋଧୀ ଅଭିଯାନ



ରାଜ୍ୟସ୍ତରୀୟ ସମ୍ମିଳନୀ
ସୂଚନା ଭବନ, ଭୁବନେଶ୍ୱର
୨୩, ଜୁନ୍, ୨୦୦୨

# ଧ୍ୱଂସକାରୀ ଆର୍ଥିକ ସଂସ୍କାର କାର୍ଯ୍ୟକ୍ରମର ରାଜ୍ୟସରକାରୀ ଓ ରାଜ୍ୟ ରାଷ୍ଟ୍ରାୟତ୍ତ ଉଦ୍ୟୋଗ ଉପରେ ପ୍ରଭାବ

୧୯୯୦ ମସିହାରୁ କେନ୍ଦ୍ର ସରକାର ନୂତନ ଆର୍ଥିକ ନୀତି ନାମରେ ଆର୍ଥିକ ସଂସ୍କାର କାର୍ଯ୍ୟକ୍ରମ ଆରମ୍ଭ କରିଛନ୍ତି। କିନ୍ତୁ ଏହି କାର୍ଯ୍ୟକ୍ରମ କେନ୍ଦ୍ର ସରକାରଙ୍କର ନିଜସ୍ୱ ପ୍ୟାଟେଣ୍ଟ ନୁହେଁ। ଉନ୍ନତ ପୁଞ୍ଜିବାଦୀ ରାଷ୍ଟ୍ର ତଥା ସାମ୍ରାଜ୍ୟବାଦୀ ଦେଶଗୁଡ଼ିକ ଆନ୍ତର୍ଜାତୀୟ ମୁଦ୍ରାପାଣ୍ଠି, ବିଶ୍ୱବ୍ୟାଙ୍କ ଏବଂ ବିଶ୍ୱ ବାଣିଜ୍ୟ ସଂଗଠନ (ପୂର୍ବର ଗ୍ୟାଟ୍ ସଂଗଠନ) ଜରିଆରେ ସେମାନଙ୍କର ଏହି ପ୍ୟାଟେଣ୍ଟକୁ ଅନୁନ୍ନତ ତଥା ବିକାଶଶୀଳ ଦେଶମାନଙ୍କ ପାଇଁ ଲାଗୁ କରିଛନ୍ତି। ଏହି ଆର୍ଥିକ ସଂସ୍କାର କାର୍ଯ୍ୟକ୍ରମର ବିଭିନ୍ନ ଦିଗ ରହିଛି। ଓଡ଼ିଶାର ରାଜ୍ୟ ସରକାରଙ୍କ ବିଭିନ୍ନ ବିଭାଗ ଓ ରାଜ୍ୟ ସରକାରଙ୍କ ନିୟନ୍ତ୍ରଣରେ ଥିବା ବିଭିନ୍ନ ରାଷ୍ଟ୍ରାୟତ୍ତ ଉଦ୍ୟୋଗ ଗୁଡିକ ଉପରେ ଏହି ସଂସ୍କାର କାର୍ଯ୍ୟକ୍ରମ କିଭଳି ପ୍ରଭାବ ପକାଇଛି ତାହା ବିଚାର୍ଯ୍ୟ ବିଷୟ।

ଆର୍ଥିକ ସଂସ୍କାର ଅର୍ଥ ରାଷ୍ଟ୍ର ସମସ୍ତ ବ୍ୟବସାୟ, ବାଣିଜ୍ୟ, ସେବା ତଥା ସମାଜ କଲ୍ୟାଣମୂଳକ କାର୍ଯ୍ୟକ୍ରମରୁ ଓହରି ଆସି ତାହାର ଦାୟିତ୍ୱ ଦେଶୀ ବିଦେଶୀ ଘରୋଇ ମାଲିକାନା ହାତରେ ଟାଡ଼ି ଦେବା ଆବଶ୍ୟକ ବୋଲି କେନ୍ଦ୍ର ସରକାରଙ୍କୁ ପୂର୍ବରୁ ଉଲ୍ଲେଖ କରାଯାଇଥିବା ୩ଟି ଯାକ ସଂସ୍ଥା ସର୍ତ୍ତାରୋପ କରି ବୁଝାଇଛନ୍ତି। କେନ୍ଦ୍ର ସରକାର ମଧ୍ୟ ନତଜାନୁ କରି ତାକୁ ଗ୍ରହଣ କରିଛନ୍ତି। କେନ୍ଦ୍ର ସରକାର ନିଜ କ୍ଷେତ୍ରରେ ତଥା କେନ୍ଦ୍ରୀୟ ରାଷ୍ଟ୍ରାୟତ୍ତ ଉଦ୍ୟୋଗ କ୍ଷେତ୍ରରେ ଏହି ପ୍ରେସ୍‌କ୍ରିପ୍‌ସନ୍‌କୁ କାର୍ଯ୍ୟକାରୀ କରୁଥିବା ବେଳେ ବିଭିନ୍ନ ରାଜ୍ୟ ସରକାରମାନେ ଯେଭଳି ଏହି ନିର୍ଦ୍ଦେଶକୁ କାର୍ଯ୍ୟକାରୀ କରିବେ ସେଥିପାଇଁ ବିଶ୍ୱବ୍ୟାଙ୍କ, ମୁଦ୍ରାପାଣ୍ଠି ଓ ବିଶ୍ୱ ବାଣିଜ୍ୟ ସଂଗଠନର ପିଆଦା ସାଜିଛନ୍ତି। ଉପରୋକ୍ତ ୩ଟି ସଂଗଠନର ଘୃଣ୍ୟ ସର୍ତ୍ତକୁ ବିଭିନ୍ନ ରାଜ୍ୟ ସରକାର ଗୁଡିକ ଯେଭଳି ଗ୍ରହଣ କରନ୍ତି ସେଥିପାଇଁ କେନ୍ଦ୍ରୀୟ ଅନୁଦାନକୁ ଅଙ୍କୁଶ ଭାବେ ବ୍ୟବହାର କରୁଛନ୍ତି। ତେଣୁ ରାଷ୍ଟ୍ରାୟତ୍ତ ଉଦ୍ୟୋଗ ଏବଂ ବିଭିନ୍ନ ସରକାରୀ ବିଭାଗର ଘରୋଇ କରଣର ଧାରା କେନ୍ଦ୍ରଠାରୁ ରାଜ୍ୟମାନଙ୍କ ପର୍ଯ୍ୟନ୍ତ (କେତେକ ବ୍ୟତିକ୍ରମ ବ୍ୟତୀତ) ଆରମ୍ଭ ହୋଇଛି।

## ଘରୋଇକରଣ ପାଇଁ ସରକାରୀ ସଂସ୍ଥା ବିରୁଦ୍ଧରେ ବିଷୋଦ୍‌ଗାର

ସରକାରୀ ବିଭାଗ ଓ ରାଷ୍ଟ୍ରାୟତ୍ତ ଉଦ୍ୟୋଗର ଘରୋଇକରଣ ପାଇଁ ସେଗୁଡିକ ବିରୁଦ୍ଧରେ ବ୍ୟାପକ ଅପପ୍ରଚାର ଖୋଦ୍ ସରକାରଙ୍କ ପକ୍ଷରୁ ଆରମ୍ଭ କରାଯାଇଛି। ରାଜ୍ୟର ରାଷ୍ଟ୍ରାୟତ୍ତ ଉଦ୍ୟୋଗ ଗୁଡିକ କ୍ଷତିରେ ଚାଲିଛି ଏବଂ ସେଥିପାଇଁ କର୍ମଚାରୀଙ୍କୁ ଦାୟୀ କରି ସେହି ସଂସ୍ଥାଗୁଡିକୁ ବନ୍ଦ କରିବା କିମ୍ବା ଘରୋଇ ମାଲିକମାନଙ୍କୁ ବିକ୍ରୀ କରିଦେବାପାଇଁ ଚକ୍ରାନ୍ତ ଚାଲିଛି। କର୍ମଚାରୀମାନଙ୍କୁ ଦରମା ଦିଆଯାଉନାହିଁ ଏବଂ ସ୍ୱେଚ୍ଛା ଅବସର ନେବାପାଇଁ ବସ୍ତୁତଃ ବାଧ କରାଯାଉଛି। ରାଷ୍ଟ୍ରାୟତ୍ତ ଉଦ୍ୟୋଗ ଗୁଡ଼ିକରେ ବହୁ ଅଧିକ ପରିମାଣରେ ପୁଞ୍ଜି ବିନିଯୋଗ ହୋଇ ସେଗୁଡିକ ନଷ୍ଟ ହୋଇଗଲା ବୋଲି ଦୋଷାରୋପ କରାଯାଉଛି। କିନ୍ତୁ ରାଜ୍ୟର ଏହି ରାଷ୍ଟ୍ରାୟତ୍ତ ଉଦ୍ୟୋଗଗୁଡିକ କ୍ଷତି ପାଇଁ ଦାୟୀ କିଏ? କାହିଁକି କ୍ଷତି ଘଟିଲା? ଯିଏ କ୍ଷତି ପାଇଁ ଦାୟୀ ତାକୁ ଲୋକଲୋଚନକୁ କାହିଁକି ଅଣାଯାଉ ନାହିଁ?

# ରାଜ୍ୟ ରାଷ୍ଟ୍ରାୟତ୍ତ ଉଦ୍ୟୋଗ

୬୪ଟି ସରକାରୀ କଂପାନୀ ଓ ୪ଟି ବୈଧାନିକ (ଷ୍ଟାଚ୍ୟୁଟାରୀ) କର୍ପୋରେସନ୍ ମିଶି ରାଜ୍ୟରେ ୬୮ଟି ରାଷ୍ଟ୍ରାୟତ୍ତ ଉଦ୍ୟୋଗ ରହିଛି। ଏହାଛଡ଼ା କଂପାନୀ ଆଇନ୍ ୧୯୫୬ର ଧାରା ୬୧୯-ଖ ଅନୁଯାୟୀ ଆଉ ୩ଟି କଂପାନୀ ରହିଛି। କିନ୍ତୁ ୬୪ଟି ସରକାରୀ ଉଦ୍ୟୋଗ ମଧ୍ୟରୁ ୩୦ଟି ଚାଲୁ ଅବସ୍ଥାରେ ଅଛି, ୩୪ଟି କାର୍ଯ୍ୟକ୍ଷମ ନାହିଁ। ସେହି ୩୪ଟି ଉଦ୍ୟୋଗ ମଧ୍ୟରୁ ୯ଟିକୁ ଭାଙ୍ଗି ଦିଆଯାଇଛି (ଲିକ୍ୟୁଡେଟେଡ୍),୨୩ଟିକୁ ବନ୍ଦ କରି ଦିଆଯାଇଛି ଓ ୨ଟିକୁ ଅନ୍ୟ ଉଦ୍ୟୋଗ ସହ ମିଶାଇ ଦିଆଯାଇଛି। ଏହାଛଡ଼ା ୨୧ଟି ଆପେକ୍ସ ସମବାୟ ସଂସ୍ଥା, ୭ଟି ସୂତାକଳ ଓ ୪ଟି ଚିନିକଳ ରହିଛି। ଏହି ରାଷ୍ଟ୍ରାୟତ୍ତ ଉଦ୍ୟୋଗ ଗୁଡିକରେ ତା୩୧।୩।୦୧ରିଖ ସୁଦ୍ଧା ପୁଞ୍ଜି ବିନିଯୋଗ ହୋଇଛି ୯୭୯୫ କୋଟି ଟଙ୍କା। ଏହାଛଡ଼ା ସରକାର ୪୫୬୮ କୋଟି ଟଙ୍କା ଗ୍ୟାରେଣ୍ଟି ଦେଇଛନ୍ତି। ଆରମ୍ଭ ଦିନରୁ ଏଥିରେ ମୋଟ କ୍ଷତି ଘଟିଛି ୧୬୪୨.୩୪ କୋଟି ଟଙ୍କା। ୫୯୦୦୦ କର୍ମଚାରୀ ଏହି ନିଗମ ଗୁଡ଼ିକରେ କାମ କରୁଛନ୍ତି। ଏହି ନିଗମମାନଙ୍କ ମଧ୍ୟରୁ ଓଡ଼ିଶା ଖଣି ନିଗମ, ଇଡ୍କୋ, ଗ୍ରାମ୍ୟ ଗୃହ ନିର୍ମାଣ ନିଗମ, ପଣ୍ୟାଗାର ନିଗମ, ଓଡ଼ିଶା ହାଇଡ୍ରୋ ପାୱାର କର୍ପୋରେସନ୍, ଓପିଜିସି, ରାଜ୍ୟ ଯୋଗାଣ ନିଗମ, କାଜୁ ନିଗମ, ହିରାକୁଦ ଇଣ୍ଡଷ୍ଟ୍ରିଆଲ୍ ୱାର୍କ୍ସ, ଓଡ଼ିଶା ଅର୍ଥ ନିଗମ ଆଦି ୧୦ଟି ସଂସ୍ଥା ପ୍ରାୟ ଲାଭରେ ଚାଲିଲା ବେଳେ ବାକି ୨୦ଟି ନିଗମ କ୍ଷତିରେ ଚାଲିଛନ୍ତି। କିନ୍ତୁ ସରକାର କ୍ଷତି ଆଳରେ ଘରୋଇକରଣ କରିବା କଥା କହୁଥିଲେ ହେଁ ବାସ୍ତବ କ୍ଷେତ୍ରରେ ଲାଭଜନକ ସଂସ୍ଥା କିମ୍ବା କ୍ଷତିରେ ଚାଲୁଥିଲେ ବି ପୁର୍ନବିନ୍ୟାସ କରି ଲାଭରେ ଚାଲିବାର ସମ୍ଭାବନା ଥିବା ନିଗମ ଗୁଡ଼ିକୁ ବେଶ୍ କେତେକ ନିର୍ଦ୍ଦିଷ୍ଟ ଘରୋଇ ସଂସ୍ଥାକୁ ବାଲି ଗୋଡି ଦରରେ ବିକ୍ରୀ କରିଦେଉଛନ୍ତି। Price Water House and cooper ନାମକ ଏକ ଆନ୍ତର୍ଜାତୀୟ ସଂସ୍ଥା ABS Spinning Millର ମୂଲ୍ୟ ୪୦ କୋଟି ଟଙ୍କା ନିର୍ଦ୍ଧାରଣ କରିଥିଲେ ବି ସରକାର ଏହାକୁ ୨୩ କୋଟି ଟଙ୍କାରେ ବିକ୍ରୀ ପାଇଁ ନିଷ୍ପତ୍ତି ନେଲେ। ଅନ୍ୟ ଦିଗରେ ଆଉ କେତେକ ନିଗମକୁ ସଂପୂର୍ଣ୍ଣ ଭାବେ ବନ୍ଦ କରିଦେବାକୁ ବସିଛନ୍ତି। କ୍ଷତିରେ ଚାଲୁଥିବା ସଂସ୍ଥା ଗୁଡିକର କାରଣ ନିର୍ଦ୍ଧାରଣ କରି ସେଗୁଡିକୁ ଲାଭରେ ଚଳାଇବା ପାଇଁ ଆଦୌ ପ୍ରୟାସ କରୁନାହାଁନ୍ତି। ଯେଉଁ ନିଗମ ଗୁଡିକରେ କିଛିଟା ଲାଭ ହେଉଛି ତାହାର ଲାଭଜନକ କାରବାରର ଘରୋଇକରଣ କରାଯାଉଛି। ଆଗ୍ରୋ ଇଣ୍ଡଷ୍ଟ୍ରିଜ୍ କର୍ପୋରେସନ୍ ଏହାର ଏକ ଉଦାହରଣ। ରାଜ୍ୟ ଚମଡ଼ା ନିଗମ କ୍ରମାଗତ କ୍ଷତିରେ ଚାଲୁଛି ବୋଲି କହି ଏହାକୁ ବନ୍ଦ କରିଦେବା ପାଇଁ ନିଷ୍ପତ୍ତି ନିଆଯାଉଛି। ଏହି ନିଗମର କ୍ଷତିର କାରଣ ହେଉଛି ଏହା ନିକଟରେ କାମ ପାଇଁ ଅର୍ଡର ନାହିଁ। ଖୋଦ୍ ଓଡ଼ିଶା ସରକାର ଯଦି ନିଜର ପୋଲିସ୍ ଓ ଫରେଷ୍ଟ ବିଭାଗର କର୍ମଚାରୀମାନେ ବ୍ୟବହାର କରୁଥିବା ଯୋତା ତିଆରି ପାଇଁ ଚମଡ଼ା ନିଗମକୁ ଅର୍ଡର ଦିଅନ୍ତେ ତେବେ ଏହି ନିଗମ ଲାଭରେ ଚାଲନ୍ତା। ଠିକ୍ ସେହିପରି ସରକାରୀ ପ୍ରେସ୍‌କୁ ସରକାରଙ୍କ ବହିଛପା ଅର୍ଡର ଦିଆଯାଉ ନାହିଁ। ପ୍ରେସ୍ କ୍ଷତିରେ ଚାଲୁଛି। ଅନୁରୂପ ଭାବେ ଲୁଗା କଳ, ସୂତାକଳ, ଚିନି କାରଖାନା ଆଦି କଥା।

ନିଗମ ଗୁଡ଼ିକର କ୍ଷତିର ଅନ୍ୟ ଏକ କାରଣ ହେଲା ପରିଚାଳନା ଗତ ତ୍ରୁଟି। ନିଗମ ଗୁଡ଼ିକର ଗାଡ଼ିଙ୍କୁ ମନ୍ତ୍ରୀ, ବିଭାଗୀୟ ସଚିବମାନେ ନିଜ ଘରୋଇ ଗାଡିଭଳି ବ୍ୟବହାର କରନ୍ତି। ଅଭିଜ୍ଞତା ନଥାଇ କେତେକ ପ୍ରଶାସନିକ ଅଫିସରଙ୍କୁ ଆଣି ବ୍ୟବସାୟିକ ସଂସ୍ଥାର ଦାୟିତ୍ୱ ଦିଆଯାଏ। ଏପରିକି ନିର୍ବାଚନରେ ପରାଜିତ ଶାସକ ଦଳର ବଡପଣ୍ଡାମାନଙ୍କୁ ନିଗମର ଅଧକ୍ଷ ପଦବୀରେ

ଅଧିଷ୍ଠିତ କରିବା ଆମ ରାଜ୍ୟରେ ଏକ ପରଂପରାରେ ପରିଣତ ହୋଇ ସାରିଲାଣି । ସେମାନେ ଗୋଟିଏ ଗୋଟିଏ ଧଳାହାତି ଭଳି ନିଗମ ଉପରେ ବୋଝ ସାଜିଛନ୍ତି । ନିଗମର କ୍ଷତି କରୁଛନ୍ତି ।

କ୍ଷତିର ୩ୟ କାରଣ ହେଲା- ଆବଶ୍ୟକତା ଅନୁଯାୟୀ ବିଭିନ୍ନ ସଂସ୍ଥା କଳକାରଖାନାର ଆଧୁନିକୀକରଣ କରିବାପାଇଁ ସରକାରଙ୍କ ବିମୁଖତା । ଏଥିପାଇଁ ଆବଶ୍ୟକୀୟ ଅର୍ଥ ସରକାର ଯୋଗାଉ ନାହାଁନ୍ତି ।

ନିଗମ ଗୁଡ଼ିକ କ୍ଷତି କରିବାର ୪ର୍ଥ କାରଣ ହେଲା- ନିଗମ ଗୁଡ଼ିକର ନିଜସ୍ୱ କର୍ମଚାରୀ ନରଖି ଡେପୁଟେସନ୍‌ରେ କର୍ମଚାରୀ ଆଣିବା । ଏହା ଦ୍ୱାରା ନିଗମର ଖର୍ଚ୍ଚ ଅଧିକ ହେଉଛି ।

ନିଗମ ଗୁଡ଼ିକ କ୍ଷତି କରିବାର ୫ମ କାରଣ ହେଲା- ବ୍ୟାପକ ଦୁର୍ନୀତି । ଉଚ୍ଚପଦପଦବୀରେ ଅଧିଷ୍ଠିତ କେତେକ ବ୍ୟକ୍ତି ଏବଂ କେତେକ ରାଜନୈତିକ ନେତୃବୃନ୍ଦ ଏଭଳି ଦୁର୍ନୀତିର ମୂଳ ଉତ୍ସ । ବ୍ୟୁରୋକ୍ରାଟ୍- ରାଜନୈତିକ ନେତୃବୃନ୍ଦଙ୍କ ମଧ୍ୟରେ ଏକ ଅନୈତିକ ସଂପର୍କ ଗଢ଼ି ଉଠିଛି । ନିଗମ ଗୁଡିକୁ କାର୍ଯ୍ୟ ଦିଆନଯାଇ ଘରୋଇ ଉଦ୍ୟୋଗମାନଙ୍କୁ ସେହି କାର୍ଯ୍ୟ ଦିଆଯାଉଛି । ୫ ନମ୍ବର ଜାତୀୟ ରାଜପଥ ଗୋପାଳପୁର ନିକଟରେ ଟୋଲ ଟିକସ ଆଦାୟ ଦାୟିତ୍ୱ ରାଜ୍ୟର ବ୍ରିଜ୍ ଏଣ୍ଡ କନଷ୍ଟ୍ରକ୍‌ସନ୍ ନିଗମକୁ ଦିଆ ନଯାଇ ଏକ ଘରୋଇ ସଂସ୍ଥାକୁ ଦେବା ଏହାର ଏକ ଉଦାହରଣ ମାତ୍ର । ଏହା ମଧ୍ୟରେ ରାଜ୍ୟ ଚମଡ଼ା ନିଗମ, ଓଡ଼ିଶା ରାଜ୍ୟ ବାଣିଜ୍ୟ କର ନିଗମ, ହସ୍ତତନ୍ତ ଉନ୍ନୟନ ନିଗମ, ଓଡ଼ିଶା ଇନ୍‌ଷ୍ଟ୍ରୁମେଣ୍ଟସ୍ କଂପାନୀକୁ ବନ୍ଦ କରି ଦିଆଯାଇଛି । ୩ଟି ଚିନି କଳ ଓ ୭ଟି ସୂତାକଳକୁ ଘରୋଇ ମାଲିକଙ୍କ ହାତରେ ଟେକି ଦେବା ପାଇଁ ନିଷ୍ପତ୍ତି ହୋଇଛି । କୋଣାର୍କ ଟେଲିଭିଜନ, ଉତକଳ ଗିରୋଇଁ ପ୍ଲାଣ୍ଟ, ଉତ୍‌କଳ ସିମେଣ୍ଟ, କଳିଙ୍ଗ ଆଇରନ୍ ଓ୍ୱାର୍କ୍ସ, ଫେରୋକ୍ରୋମ୍ ପ୍ଲାଣ୍ଟ, ଗୃହ ନିର୍ମାଣ ନିଗମ, ଓଡ଼ିଶା ଟିମ୍ବର ଏଣ୍ଡ ଇଞ୍ଜିନିୟରିଂ ଓ୍ୱାର୍କ୍ସ, ଜେନେରାଲ ଇଞ୍ଜିନିୟରିଂ ଏଣ୍ଡ ସାଇଣ୍ଟିଫିକ୍ ଓ୍ୱାର୍କ୍ସ, ନିଉ ମୟୂରଭଞ୍ଜ ଟେକ୍ସଟାଇଲ, କଳିଙ୍ଗ ଟିମ୍ବରର୍ସ, କେ.ଏସ୍.ରିଫ୍ରାକ୍‌ଟରିଜ୍‌କୁ ସଂପୂର୍ଣ୍ଣ ଭାବେ ଘରୋଇକରଣ କରାଯିବ । ପର୍ଯ୍ୟଟନ ଉନ୍ନୟନ ନିଗମ ଅଧିନସ୍ଥ ପାନ୍ଥ ନିବାସ ଗୁଡିକରେ ମଧ ଘରୋଇକରଣ ହେବ ।

ଓଡ଼ିଶା ରାଜ୍ୟ ବିଦ୍ୟୁତ୍ ବୋର୍ଡକୁ ଭାଙ୍ଗି ୩ ଭାଗରେ ବିଭକ୍ତ କରାଗଲା । ଗ୍ରୀଡ୍‌କୋ ସମେତ ୩ଟି ଯାକ ସଂସ୍ଥାର ଘରୋଇକରଣ ପ୍ରକ୍ରିୟା ଆରମ୍ଭ ହୋଇଛି । ଘରୋଇକରଣ ହେଲେ ସଂସ୍ଥା ଭଲରେ ଚାଲିବ, ଖାଉଟୀମାନେ କମ୍ ମୂଲ୍ୟରେ ଉନ୍ନତମାନର ସେବା ପାଇବେ ବୋଲି ଯେଉଁ ପ୍ରଚାର କରାଯାଉଥିଲା ବିଦ୍ୟୁତ୍‌ବୋର୍ଡ ଘରୋଇକରଣ ମଧ୍ୟଦେଇ ତାହା ସଂପୂର୍ଣ୍ଣ ଭୁଲ ବୋଲି ଆଉ ଥରେ ପ୍ରମାଣିତ ହୋଇଛି । ବିଦ୍ୟୁତ୍ ମୂଲ୍ୟ ବଢ଼ିଲା, କିନ୍ତୁ ଉନ୍ନତ ସେବା କିମ୍ବା ଉନ୍ନତମାନ ପରିଲକ୍ଷିତ ହେଲା ନାହିଁ । ସରକାରଙ୍କୁ ପ୍ରାପ୍ୟ ନଦେଇ ଏ.ଇ.ଏସ୍. କଂପାନୀ ଚାଲିଗଲା । ମୋଟ ଉପରେ କହିବାକୁ ଗଲେ ରାଜ୍ୟ ସରକାର ଓଡ଼ିଶାର କୌଣସି ରାଷ୍ଟ୍ରାୟତ୍ତ ଉଦ୍ୟୋଗ, ଆପେକ୍ସ ସୋସାଇଟି, ସୂତାକଳ, ଚିନିକଳକୁ ସରକାରୀ ମାଲିକାନା ମଧ୍ୟରେ ନରଖିବାକୁ ନିଷ୍ପତ୍ତି କରିଛନ୍ତି । ଏହି ନିଷ୍ପତ୍ତି ନେବାରେ କେନ୍ଦ୍ର ସରକାରଙ୍କ Department of Expenditure ସହ ଏକ ବୁଝାମଣା (MOU) ସ୍ୱାକ୍ଷର କରିଛନ୍ତି । ରାଜ୍ୟର ସମସ୍ତ ଉଦ୍ୟୋଗକୁ ଗୁରୁତ୍ୱପୂର୍ଣ୍ଣ (Core Sector) ଓ ଅଣଗୁରୁତ୍ୱପୂର୍ଣ୍ଣ (non-core sector) କ୍ଷେତ୍ରରେ ବିଭକ୍ତ କରାଯାଇଛି । ଅଣଗୁରୁତ୍ୱପୂର୍ଣ୍ଣ କ୍ଷେତ୍ରକୁ ସିଧାସଳଖ ବିକ୍ରୀ/ବନ୍ଦ କରି ଦିଆଯାଉଥିବା ବେଳେ ଗୁରୁତ୍ୱପୂର୍ଣ୍ଣ କ୍ଷେତ୍ର ଗୁଡିକର ଆର୍ଥିକ ଓ ସଂଗଠନିକ ପୁନଃବିନ୍ୟାସ ନାମରେ ତାର କାର୍ଯ୍ୟ ପରିସର ସଙ୍କୁଚିତ, କର୍ମଚାରୀ ହ୍ରାସ ସଂଗକୁ ୨ୟ ପର୍ଯ୍ୟାୟରେ ସେଗୁଡିକର ଘରୋଇକରଣ ପାଇଁ ପଦକ୍ଷେପ ନିଆଯାଉଛି । ଅତ୍ୟନ୍ତ ଚଞ୍ଚଳତାର ସହ ପ୍ରତ୍ୟେକଟି ରାଷ୍ଟ୍ରାୟତ୍ତ ଉଦ୍ୟୋଗକୁ ଘରୋଇକରଣ କରିବା କ୍ଷମତା ଏକ କ୍ଷୁଦ୍ର କ୍ୟାବିନେଟ୍ ସବ୍ କମିଟି (ସି.ଏସ୍.ସି) ହାତରେ ରଖାଯାଇଛି । କୌଣସି ଉଦ୍ୟୋଗକୁ ବନ୍ଦ/ବିକ୍ରୀ/ପୁନର୍ବିନ୍ୟାସ କରିବାର କ୍ୟାବିନେଟ୍ ସବ୍‌କମିଟିର ନିଷ୍ପତ୍ତି ୩୦ ଦିନ ମଧ୍ୟରେ ରାଜ୍ୟ ମନ୍ତ୍ରୀମଣ୍ଡଳରେ ଗୃହୀତ ନହେଲେ ମଧ ମନ୍ତ୍ରୀମଣ୍ଡଳର ସ୍ୱୀକୃତି ରହିଛି ବୋଲି ଆପେ ଆପେ ଧରି ନିଆଯିବ । ମନ୍ତ୍ରୀମଣ୍ଡଳ

କିମ୍ବା ବିଧାନସଭାର ମଧ୍ୟ ଗୁରୁତ୍ୱ କିଛି ରହିବ ନାହିଁ। ଏହଭଳି ଏକ ସମ୍ବିଧାନ ବିରୋଧୀ ଅଧିକାର କ୍ୟାବିନେଟ୍ ସବ୍‌କମିଟି ହାତରେ ଅର୍ପଣ କରାଯାଇଛି।

## ରାଜ୍ୟ ସରକାରୀ ସଂସ୍ଥା ଉପରେ ଆକ୍ରମଣ

ରାଷ୍ଟ୍ରାୟତ୍ତ ଉଦ୍ୟୋଗ ଗୁଡ଼ିକୁ ଘରୋଇକରଣ କରିବା ପ୍ରକ୍ରିୟା ଚାଲିବା ସହିତ ରାଜ୍ୟ ସରକାରଙ୍କ ବିଭିନ୍ନ ଦ୍ପ୍ତର କାର୍ଯ୍ୟ ଘରୋଇ ଉଦ୍ୟୋଗ ହାତରେ ସମର୍ପି ଦେବାର ଚକ୍ରାନ୍ତ ଆରମ୍ଭ ହୋଇଛି। ଏଥିପାଇଁ ପୂର୍ବପରି ସରକାର ପ୍ରଚାର ଆରମ୍ଭ କରିଛନ୍ତି ଯେ ସରକାରୀ ଦପ୍ତର ମାନଙ୍କରେ ଆବଶ୍ୟକତାଠାରୁ ବହୁ ଅଧିକ କର୍ମଚାରୀ ଅଛନ୍ତି। ଦରମା ଦେବା ପାଇଁ ସରକାରଙ୍କ ରାଜସ୍ୱ ଆୟ ମଧ୍ୟ ନିଅଣ୍ଟ ହେଉଛି। ସେଥିପାଇଁ ବିଭିନ୍ନ ବିଭାଗରେ କର୍ମଚାରୀ ସଂଖ୍ୟା ହ୍ରାସ କରିବାକୁ ପଡ଼ିବ। ବିଭିନ୍ନ ବିଭାଗ କାମ ସରକାର ନକରି ଘରୋଇ ମାଲିକମାନଙ୍କ ହାତକୁ ସମର୍ପି ଦେବେ। ସରକାରଙ୍କ ହିସାବ ଅନୁଯାୟୀ ୧ମ ଶ୍ରେଣୀ ଅଫିସର ୧୩,୬୭୮, ୨ୟ ଶ୍ରେଣୀ ଅଫିସର ୩୨,୦୯୦, ୩ୟ ଶ୍ରେଣୀ କର୍ମଚାରୀ ୩,୯୦,୫୩୧, ୪ର୍ଥ ଶ୍ରେଣୀ କର୍ମଚାରୀ ୧,୦୩,୫୩୮ ଓ ଡିଏଲ୍.ଆର୍./ଏନ୍.ଏମ୍.ଆର୍. ୩୭,୨୮୧ ଜଣ ଏହିପରି ୫,୮୦,୧୨୨ ଜଣ କର୍ମଚାରୀ ଅଛନ୍ତି। ଏମାନଙ୍କ ଛଡା ଗ୍ରାଣ୍ଟ-ଇନ୍-ଏଡ୍. ରେ ୩୦,୮୯୯ ଜଣ କର୍ମଚାରୀ ଅଛନ୍ତି। କେନ୍ଦ୍ର ବିଜେପି ସରକାର ୧୯୯୯ ମସିହା ଏପ୍ରିଲ୍ ମାସରେ ତତ୍କାଳୀନ ରାଜ୍ୟର କଂଗ୍ରେସ ସରକାର ସହ ଏକ ମୋମୋରାଣ୍ଡମ୍ ଅଫ୍-ଅଣ୍ଡର ଷ୍ଟାଣ୍ଡିଂ କରିଥିଲେ। ପରେ ପୁଣି ୨୦୦୧ ମସିହାରେ ଆଉ ଏକ ମୋମୋରାଣ୍ଡମ୍ ଅଫ୍ ଅଣ୍ଡର ଷ୍ଟାଣ୍ଡି ବି.ଜେ.ଡ଼ି.-ବି.ଜେ.ପି. ସରକାରଙ୍କ ସହ କରିଛନ୍ତି। ଏହାଫଳରେ ଆଗାମୀ ୫ ବର୍ଷ ମଧ୍ୟରେ ରାଜ୍ୟର କର୍ମଚାରୀଙ୍କ ସଂଖ୍ୟା ୨୦% ଭାଗ ହ୍ରାସ କରିବାକୁ ନିଷ୍ପତ୍ତି ହୋଇଛି। ପ୍ରଥମ ପର୍ଯ୍ୟାୟରେ ବିଭିନ୍ନ ଶ୍ରେଣୀର ଖାଲି ରହିଥିବା ୧୮,୦୩୭ଟି ପଦବୀକୁ ସରକାର ଉଚ୍ଛେଦ କରିଛନ୍ତି। ୨ୟ ପର୍ଯ୍ୟାୟରେ ବିଭିନ୍ନ ବିଭାଗ ଅଧୀନରେ ଥିବା ୫୪,୧୪୨ଟି ପଦବୀ ଉଚ୍ଛେଦ ପାଇଁ ନିଷ୍ପତ୍ତି ହୋଇଛି। ଏଥି ମଧ୍ୟରେ ୧ମ ଶ୍ରେଣୀର ୧୬୨୨, ୨ୟ ଶ୍ରେଣୀର ୪୨୯୧, ୩ୟ ଶ୍ରେଣୀର ୪୦୭୬୫ ଏବଂ ୪ର୍ଥ ଶ୍ରେଣୀର ୬୪୫୪ଟି ପଦବୀ ଅନ୍ତର୍ଭୁକ୍ତ। ଚଳିତ ବର୍ଷ ଶେଷ ସୁଦ୍ଧା ୫୦ ହଜାର ଖାଲି ପଦବୀ ଉଚ୍ଛେଦ ପାଇଁ ସରକାର ପ୍ରତିଶ୍ରୁତିବଦ୍ଧ ଥିବାବେଳେ ଆଉ ଅଧିକ ୧୦ ହଜାର ସରକାରୀ କର୍ମଚାରୀଙ୍କୁ ଛଟେଇ କରିବା ପାଇଁ ପ୍ରସ୍ତାବ ଦେଇଛନ୍ତି। ଏହାଛଡ଼ା ବିଭିନ୍ନ ବିଭାଗ ଅଧୀନରେ କାର୍ଯ୍ୟ କରୁଥିବା ୩୫,୮୨୩ ଜଣ ଏନ୍.ଏମ୍.ଆର୍., ଡି.ଏଲ୍.ଆର୍. ଏବଂ ଆଡ୍‌ହକ୍ ଭିତ୍ତିରେ କାର୍ଯ୍ୟ କରୁଥିବା କର୍ମଚାରୀଙ୍କୁ ଛଟେଇ କରିବାପାଇଁ ରାଜ୍ୟ ସରକାର ନିଷ୍ପତ୍ତି ନେଇଛନ୍ତି। ରାଜ୍ୟ ସରକାରଙ୍କ ଜଳସଂପଦ ବିଭାଗରେ ସର୍ବାଧିକ ୨୩,୫୨୮ ଜଣ ଡି.ଏଲ୍.ଆର୍., ଏନ୍.ଏମ୍.ଆର୍ ତଥା ଆଡହକ୍ ଭିତ୍ତିରେ କର୍ମଚାରୀ କାମ କରୁଥିବା ବେଳେ ରାଜସ୍ୱ ବିଭାଗରେ ୬୨୪୮, ଗ୍ରାମ୍ୟ ଉନ୍ନୟନ ବିଭାଗରେ ୪୫୮୬, ପୂର୍ତ୍ତ ବିଭାଗରେ ୩୭୫୭, ନଗର ଉନ୍ନୟନ ଓ ଗୃହ ନିର୍ମାଣ ବିଭାଗରେ ୨୭୦୦, ଆଦିବାସୀ ଓ କଲ୍ୟାଣ ବିଭାଗରେ ୧୪୨୪, ସ୍ୱାସ୍ଥ୍ୟ ଓ ପରିବାର କଲ୍ୟାଣ ବିଭାଗରେ ୧୩୭୨, ଜଙ୍ଗଲ ଓ ପରିବେଶ ବିଭାଗରେ ୬୨୩, ମତ୍ସ୍ୟ ଓ ପଶୁସଂପଦ ବିଭାଗରେ ୫୬୯, ପର୍ଯ୍ୟଟନ ଓ ସଂସ୍କୃତି ବିଭାଗରେ ୩୯, ଶକ୍ତି ବିଭାଗରେ ୩୩,ଅବକାରୀ ବିଭାଗରେ ୧୧, ପରିବହନ ବିଭାଗରେ ୪୩, ଶିଳ୍ପ ବିଭାଗରେ୨୨୬, ବିଦ୍ୟାଳୟ ଓ ଗଣଶିକ୍ଷା ବିଭାଗରେ ୮୫, ବାଣିଜ୍ୟ ବିଭାଗରେ ୩୧୪, ସାଧାରଣ ପ୍ରଶାସନରେ ୨୩୫, ଓଡ଼ିଶା ବିଧାନସଭାରେ ୩ ଓ କ୍ରୀଡା ଓ ଯୁବ ସେବା ବିଭାଗରେ ୧ ଜଣ କାମ କରୁଛନ୍ତି। ଏମାନଙ୍କ ବହିଷ୍କାର ପାଇଁ ସରକାର ନିର୍ଦ୍ଦେଶ ଦେଇଛନ୍ତି। ଅବସର ନେଉଥିବା କିମ୍ବା ଅକାଳରେ ମୃତ୍ୟୁବରଣ କରୁଥିବା କର୍ମଚାରୀମାନଙ୍କ ସ୍ଥାନରେ ନୂତନ ନିଯୁକ୍ତି ବନ୍ଦ। କର୍ମଚାରୀମାନେ ମାସ ମାସ ଦରମା ପାଉ ନଥିବା ବେଳେ ମନ୍ତ୍ରୀ ଓ ବିଧାୟକମାନଙ୍କ ପାଇଁ ସୁବିଧା ସୁଯୋଗ ବୃଦ୍ଧି କରାଯାଇଛି। ନୂଆ ନୂଆ ଗାଡି କିଣା ସଂଗକୁ

ବଙ୍ଗଳାମାନ ସାଜସଜ୍ଜା ଚାଲିଛି। ଏଣେ ଖର୍ଚ୍ଚ କାଟ ନାମରେ କର୍ମଚାରୀମାନଙ୍କ ଏଲ୍.ଟି.ସି. ଓ ସରେଣ୍ଡର ଲିଭ୍ ବନ୍ଦ କରି ଦିଆଯାଉଛି। ମୃତ୍ତିକା ସଂରକ୍ଷଣ ବିଭାଗ କର୍ମଚାରୀମାନେ ବର୍ଷାଧିକ କାଳ ଦରମା ପାଉ ନାହାଁନ୍ତି। ବହୁ ଶିକ୍ଷକ ମାସ ମାସ ହେଲା ଦରମା ପାଇବାରୁ ବଞ୍ଚିତ।

ତେଣୁ ଆର୍ଥିକ ସଂସ୍କାର ଅର୍ଥ କର୍ମଚାରୀମାନଙ୍କ କ୍ଷେତ୍ରରେ ନିଯୁକ୍ତି ବନ୍ଦ, ପଦବୀ ଉଚ୍ଛେଦ, ଦରମା ବନ୍ଦ, ସୁବିଧାସୁଯୋଗ କାଟ, ସ୍ୱେଚ୍ଛାମୂଳକ ଅବସର ନାମରେ ବାଧ୍ୟତାମୂଳକ ଅବସର ବୋଲି ବୁଝାଯାଉଛି। ଏବେ କର୍ମଚାରୀମାନଙ୍କୁ ବିଦା କରିବାପାଇଁ ସେମାନଙ୍କ ଗୁପ୍ତ ଚରିତ୍ର ପଞ୍ଜିକା ଅନୁଧ୍ୟାନ ପାଇଁ ଅର୍ଥ ମନ୍ତ୍ରୀ କହିଛନ୍ତି। ରାଜ୍ୟର ଋଣଭାର ଅଧିକ ହୋଇଯାଇଛି ଏବଂ ସେହି ପରିସ୍ଥିତିରେ କର୍ମଚାରୀ ଛଟେଇ ବ୍ୟତୀତ ଅନ୍ୟ ପନ୍ଥା ନାହିଁ ବୋଲି ରାଜ୍ୟ ସରକାର କହି ବୁଲୁଛନ୍ତି। କିନ୍ତୁ ଏହା ଅର୍ଦ୍ଧ ସତ୍ୟ। ଅର୍ଦ୍ଧ ସତ୍ୟ ଅସତ୍ୟଠାରୁ ଅଧିକ ଭୟଙ୍କର।

## ବିକଳ୍ପ ନୀତି

ରାଜ୍ୟ ସରକାର ରାଜ୍ୟ ଅର୍ଥନୀତିରେ ସଙ୍କଟଜନକ ପରିସ୍ଥିତିର ମୂଳକଥା ଲୋକଲୋଚନକୁ ଆଣୁ ନାହାଁନ୍ତି। ଏହି ବି.ଜେ.ପି.-ବି.ଜେ.ଡ଼ି. ସରକାର ଶାସନ କ୍ଷମତାକୁ ଆସିବା ଦିନଠାରୁ କର୍ମଚାରୀ ଛଟେଇ, ରାଷ୍ଟ୍ରାୟତ୍ତ ଉଦ୍ୟୋଗକୁ ବିକ୍ରୀ କିମ୍ବା ବନ୍ଦ ତଥା ସରକାରୀ ବିଭାଗ ଗୁଡିକ ଯେଉଁ କାର୍ଯ୍ୟ କରୁଥିଲେ ତାକୁ ଘରୋଇ ଉଦ୍ୟୋଗ ହାତରେ ଟେକି ଦେଉଥିବା ବେଳେ ରାଜ୍ୟର ଋଣ ପରିମାଣକୁ ମାତ୍ର ୩ ବର୍ଷ ମଧ୍ୟରେ ୬୦୦୦ କୋଟି ଟଙ୍କାରୁ ଅଧିକ ବୃଦ୍ଧି କରିଛନ୍ତି। ଅନାବଶ୍ୟକୀୟ ବଦଖର୍ଚ୍ଚ ଏବଂ ଦୁର୍ନୀତି ଏହାର ଅନ୍ୟତମ କାରଣ ହୋଇଥିବା ବେଳେ ରାଜ୍ୟ କ୍ରମାଗତ ଭାବେ କେନ୍ଦ୍ରରୁ ଆବଶ୍ୟକ ଅନୁଦାନ ପାଇବାରେ ବଞ୍ଚିତ ହେବା ଏହାର ମୂଳ କାରଣ। ଆମର ପ୍ରାକୃତିକ ସଂପଦରୁ ମିଳୁଥିବା କେନ୍ଦ୍ରୀୟ ରୟାଲଟି ଦଶନ୍ଧି ଦଶନ୍ଧି ଧରି ସଂଶୋଧନ ନହେବା ଫଳରେ ଓଡ଼ିଶା ତାର ନ୍ୟାଯ୍ୟ ପ୍ରାପ୍ୟ ହରାଉଛି। ଅନ୍ୟ ଦିଗରେ ଆୟ ବୃଦ୍ଧି ପାଇଁ ଉପରୋକ୍ତ। ବ୍ୟବହାର କରୁଥିବା ପ୍ରତ୍ୟେକଟି ଦ୍ରବ୍ୟ ଉପରେ ବ୍ୟବହାର ଟିକସ ବସାଇବା ପାଇଁ ବିଶ୍ୱବ୍ୟାଙ୍କ ଓ ଡି.ଏଫ୍.ଆଇ.ଡି. ନିର୍ଦ୍ଦେଶରେ ରାଜ୍ୟ ସରକାର ନିଷ୍ପତ୍ତି କରିଛନ୍ତି।

ବସ୍ତୁତଃ ଡ଼ି.ଏଫ୍.ଆଇ.ଡ଼ି. ରାଜ୍ୟ ସରକାରଙ୍କୁ ସମସ୍ତ ନିଷ୍ପତ୍ତି ନେବାରେ ବାଧ୍ୟ କରୁଛି। ଅବସ୍ଥା ଏପରି ହେଲାଣି ଯେ ଆମେ ଏକ ସାର୍ବଭୌମ ରାଷ୍ଟ୍ରରେ ବାସ କଲାଭଳି ଜଣାନପଡ଼ି ବିଶ୍ୱବ୍ୟାଙ୍କ ଏବଂ ଦରିଆପାରି ଡ଼ି.ଏଫ୍.ଆଇ.ଡି.ର ଏକ କରଦ ରାଜ୍ୟରେ ବାସ କଲାଭଳି ପ୍ରତୀୟମାନ ହେଉଛି। ସରକାର ଯେଉଳିଭାବେ ଘରୋଇକରଣ କରୁଛନ୍ତି ରାଷ୍ଟ୍ରାୟତ୍ତ ତଥା ସରକାରୀ ସଂସ୍ଥାର ବିକ୍ରୀବଟା ଚଳାଇଛନ୍ତି ସେଥିରୁ ଜଣାପଡୁଛି ଯେ ସଚିବାଳୟ ଓ ବିଧାନସଭା ମଧ୍ୟ ବନ୍ଧା ପଡିଯିବ। ବସ୍ତୁତଃ, କେବଳ ଆଇନ୍ ପ୍ରଣୟନ ବ୍ୟତୀତ ଅନ୍ୟ କୌଣସି କାର୍ଯ୍ୟ ସରକାର କରିବେ ନାହିଁ। କାର୍ଯ୍ୟରତ କର୍ମଚାରୀଙ୍କୁ ସରକାର ବିଦା କରି ଦେଉଥିବା ବେଳେ ବେକାର ମାନେ ଚାକିରୀ ପାଇବା ପାଇଁ ସରକାର ପଦକ୍ଷେପ ନେବେ ବୋଲି ବିଚାରିବା ପାଗଳାମି ବୋଲି ବିବେଚିତ ହେବ।

ତେଣୁ ଆର୍ଥିକ ସଂସ୍କାର ପ୍ରକ୍ରିୟାର ପ୍ରଭାବ ରାଜ୍ୟ ସରକାରଙ୍କ ଉଦ୍ୟୋଗ ଏବଂ ରାଜ୍ୟ ସରକାରୀ ସଂସ୍ଥା ଉପରେ ଅତ୍ୟନ୍ତ ଭୟଙ୍କର। କେନ୍ଦ୍ର ସରକାର ଗ୍ରହଣ କରିଥିବା ନୂତନ ଆର୍ଥିକ ନୀତିର ଏହା ଅଂଶ ବିଶେଷ ମାତ୍ର। ଏହି ନୀତିକୁ ପରିବର୍ତ୍ତନ କରିବା ବ୍ୟତୀତ ଅନ୍ୟ ପନ୍ଥା ନାହିଁ। କିନ୍ତୁ କେବଳ କର୍ମଚାରୀମାନେ ଏହା କରିବା ସମ୍ଭବ ନୁହେଁ। ରାଜ୍ୟ ତଥା ଦେଶର ଅନ୍ୟାନ୍ୟ ଜନଗଣଙ୍କ ସହ ମିଶି ଐକ୍ୟବଦ୍ଧ ଆନ୍ଦୋଳନ କରିଆରେ ଏଭଳି ଜନବିରୋଧୀ, ଦେଶ ବିରୋଧୀ ଆର୍ଥିକ ସଂସ୍କାର କାର୍ଯ୍ୟକ୍ରମକୁ ରୋକାଯାଇ ପାରିବ। ସେଥିପାଇଁ ବୃହତ୍ତର ଐକ୍ୟ ଗଢ଼ି ତୋଳିବାକୁ ହେବ।

● *ଦୁଷ୍ମନ୍ତ ଦାସ*

# ଆର୍ଥିକ ସଂସ୍କାର ଓ ବିପର୍ଯ୍ୟସ୍ତ ଶିକ୍ଷା ବ୍ୟବସ୍ଥା

ରାଜ୍ୟ ସରକାର, ଋଣଦାତା ବିଶ୍ୱବ୍ୟାଙ୍କ ଓ ତାହାର ସହଯୋଗୀ ଡି.ଏଫ୍.ଆଇ.ଡି.ଙ୍କ ହୁକୁମରେ ଯେଉଁ ଆର୍ଥନୈତିକ ଓ ପ୍ରଶାସନିକ ସଂସ୍କାର ଆରମ୍ଭ କରିଛନ୍ତି, ତାହା ଫଳରେ ଓଡ଼ିଶାର ଶିଳ୍ପ, ରାଷ୍ଟ୍ରାୟତ୍ତ ଓ କୁଟୀର ଶିଳ୍ପ, କଳକାରଖାନା, କୃଷି, ଜଳସେଚନ, ବିଦ୍ୟୁତ୍ ବା ଶକ୍ତି, ସ୍ୱାସ୍ଥ୍ୟ ଆଦି ସମସ୍ତ କ୍ଷେତ୍ର ତ ଉଚ୍ଛନ୍ନ ଦଶାରେ ପହଞ୍ଚିଲାଣି ଓ ୟୁଜର୍ସ ଚାର୍ଜ ନାମରେ ଖଜଣା, ରାଜସ୍ୱ, ଜଳକର, ବିଦ୍ୟୁତଶୁଳ୍କ, ସ୍କୁଲ କଲେଜମାନଙ୍କରେ ଦରମା, ନାମଲେଖା ଫି' ଆଦି ଆଶାତୀତ ଭାବରେତ ବୃଦ୍ଧି ପାଇଛି, ମାତ୍ର ସବୁଠାରୁ ନିଦାରୁଣ ଓ ପ୍ରଚଣ୍ଡ ଆକ୍ରମଣ ଆରମ୍ଭ ହୋଇ ଶିକ୍ଷା ଉପରେ।

ବୈଦେଶିକ ଋଣଦାତାମାନଙ୍କର ବାଣୀକୁ ବେଦର ଗାର ବା ଗୁରୁ ଆଜ୍ଞା ବୋଲି ଗ୍ରହଣ କରି ରାଜ୍ୟ ସରକାର ପ୍ରଥମେ ବିଶ୍ୱବ୍ୟାଙ୍କ/ଡ଼ି.ଏଫ୍.ଆଇ.ଡି.ଙ୍କର ମିଳିତ ଆର୍ଥନୈତିକ ମିଶନର Aide memoireର ସିଦ୍ଧାନ୍ତ। ନିର୍ଦ୍ଦେଶମାନଙ୍କୁ ଆକ୍ଷରିକ ଭାବରେ ବିଧାନସଭାରେ ଉପସ୍ଥାପିତ ଶ୍ୱେତପତ୍ରରେ ପ୍ରକାଶ କରିବା ସହ, ସେଥିରେ ଥିବା ବିଭିନ୍ନ ସଂସ୍କାର ପାଇଁ ଗୋଟିଏ ଗୋଟିଏ ଟାସ୍କଫୋର୍ସ ଗଠିତ ହୋଇ, ସେମାନଙ୍କର ଦିଗ୍‌ଦର୍ଶନ ଓ ଧାରା ଅନୁଯାୟୀ ଟାସ୍କଫୋର୍ସମାନେ ତ୍ୱରାନ୍ୱିତ ଅନୁମୋଦନ ଦେବେ ବୋଲି କୁହାଗଲା। ବହୁସଂଖ୍ୟକ ବିଧାୟକ ମହୋଦୟ ଗଣ ଶ୍ୱେତପତ୍ର ନପଢ଼ିଥିଲେ ମଧ୍ୟ ତାହା ଗୃହୀତ ହୋଇଗଲା ବୋଲି ଧରିନିଆଗଲା।

ଦ୍ୱିତୀୟ ପର୍ଯ୍ୟାୟରେ ଟାସ୍କଫୋର୍ସମାନ ଗଠିତ ହୋଇ, ନିର୍ଦ୍ଦେଶିତ ମତେ ସେମାନଙ୍କର ରିପୋର୍ଟ ଲେଖିଦେଲେ ଏବଂ ସେଗୁଡିକ ବୁଦ୍ଧିଜୀବୀ, ଜନସାଧାରଣ ଗ୍ରହଣ କରିନେଲେ ବୋଲି ଗତ ୨୦୦୧ ମସିହା ଜୁନ୍ ୨୯/୩୦ ତାରିଖମାନଙ୍କରେ ରାଜ୍ୟସ୍ତରୀୟ କର୍ମଶାଳା ପରେ ଘୋଷିତ ହେଲା। ପରେ ପରେ, (୧) ମଧ୍ୟବର୍ତ୍ତୀକାଳୀନ ଆର୍ଥିକ ସଂସ୍କାର, (୨) ବଜେଟ ସଂସ୍କାର ଓ ବ୍ୟୟ ପରିଚାଳନା, (୩) ନୂଆ ନୂଆ ରାଜସ୍ୱ ଆୟ ବୃଦ୍ଧି ପାଇଁ ସଂସ୍କାର କାର୍ଯ୍ୟକ୍ରମ, (୪) ଶିକ୍ଷା କ୍ଷେତ୍ରରେ ସଂସ୍କାର, (୫) ରାଷ୍ଟ୍ରାୟତ୍ତ ଉଦ୍ୟୋଗ ବା ସରକାରୀ ପରିଚାଳିତ ଉଦ୍ୟୋଗମାନଙ୍କର ସଂସ୍କାର ଏବଂ ପୁନଃସଂଯୋଜନ, (୬) ପ୍ରଶାସନ ଓ ସିଭିଲ ସର୍ଭିସ୍ କ୍ଷେତ୍ରରେ ସଂସ୍କାର ଉପରେ ୬ଟି ଟାସ୍କଫୋର୍ସଙ୍କର ଅନୁମୋଦିତ ଡ୍ରାଫ୍ଟ ପଲିସି ବା ଚିଠା ନୀତି ଯାହାର ଅଧିକାଂଶ ବକ୍ତବ୍ୟ (WB/DFID Aide memories ର ଆକ୍ଷରିକ reproduction) କାର୍ଯ୍ୟକାରୀ କରାଯାଉଛି ବୋଲି କୁହାଯାଇଛି।

ଟାସ୍କଫୋର୍ସ ରିପୋର୍ଟରେ ୭:୧:୩ ଅନୁଚ୍ଛେଦରେ, ସଂସ୍କାର କାର୍ଯ୍ୟକ୍ରମକୁ ତ୍ୱରାନ୍ୱିତ ଭାବେ କାର୍ଯ୍ୟକାରୀ କରାଇବା ଆବଶ୍ୟକ ହେଲେ ହେଁ, ସଂସ୍କାର ପାଇଁ ମନୋଭାବର ସ୍ଥାଣୁତା, ଦୃଢ଼ ନିଷ୍ପତ୍ତିର ଅଭାବ, ରାଜନୈତିକ ଅସ୍ଥିରତା ଏଥିରେ ବାଧା ଆଣିପାରେ ଆଶଙ୍କା କରି କୁହାଯାଇଛି ଯେ , xx" Although the current government; term extends to 2004 and there is no immediate threat to its survival, of political parties are likely to make capital out of the changes, some of which will challenge strong vested interests i.e Teachers, Civil Servants and those affected by higher excise and transport taxes."xxx ( ବର୍ତ୍ତମାନର ସରକାର ୨୦୦୪ ମସିହା ପର୍ଯ୍ୟନ୍ତ ରହିବେ ଏବଂ ତାଙ୍କ ସ୍ଥିତି ଉପରେ ଏତେ ଶୀଘ୍ର କୌଣସି ବାଧା ନଥିଲେ ମଧ୍ୟ ଅନ୍ୟ ରାଜନୈତିକ ଦଳମାନେ ଏହି ପରିବର୍ତ୍ତନକୁ ପୁଞ୍ଜି କରିପାରନ୍ତି ଏବଂ ଶିକ୍ଷକ, ସରକାରୀ

କର୍ମଚାରୀ ଆଦି ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀଙ୍କଠାରୁ ତଥା ଅବକାରୀ ଓ ଗମନାଗମନ ଟିକସରେ କ୍ଷତିଗ୍ରସ୍ତ ହେଉଥିବା ଲୋକଙ୍କଠାରୁ ଏହା ବାଧାର ସମ୍ମୁଖୀନ ହୋଇପାରେ।)

ଟାସ୍କଫୋର୍ସଙ୍କ ମତରେ ଶିକ୍ଷକ ସମାଜ ଓ ସରକାରୀ କର୍ମଚାରୀ ନ୍ୟସ୍ତସ୍ୱାର୍ଥ ଗୋଷ୍ଠୀ। ଏଣୁ ବିଚାରିବାର କଥା ଏହି ନ୍ୟସ୍ତସ୍ୱାର୍ଥମାନେ, ଆର୍ଥିକ ସଂସ୍କାର ଦ୍ୱାରା ଅଭିପ୍ରେତ କି କି କାର୍ଯ୍ୟକ୍ରମକୁ ବାଧା ଦେଇ ପାରନ୍ତି ଓ ସେମାନେ କେଉଁ କେଉଁ କାର୍ଯ୍ୟକ୍ରମ ମାନ ନିର୍ଦ୍ଧାରିତ କରିଛନ୍ତି!

**ଅନୁଦାନ (Grant-in-aid):** ଋଣଦାତା ସଂସ୍ଥାମାନେ ନିର୍ଦ୍ଦେଶ ଦେଇଥିଲେ ଯେ, xx"These Education Grants are unafferdable and inequitable"xx ଏଣୁ xx"Limit the potential liability by capping the nummber of Schools and Colleges eligible for Grants. Reduce the budgetary burden by capping Grant to individual Schools and Colleges at their current nominal level and enfroce regulations to remove aid from poorly performing schools and colleges receiving grants."xx ଶେଷରେ ସେମାନେ କହିଲେ, "A cabinet subcommittee on Education has prepared draft legislation.xx"etc.

କ୍ୟାବିନେଟ୍ ସବ୍‌କମିଟିଙ୍କ ଦ୍ୱାରା ଏହି ଚିଠା ଆଇନ୍ ଯାହା ୧୯୯୮ରୁ ଭୀମ ପେଟରେ ଥିବା ଲୌହ ମୂଷଳ ଭଳି ବଢୁଛି, ସେଥିରେ ଅଛି, xxx "Private Educational Institutions opened on a after 1/6/94 shall not be given any grant-in-aid, whatsover-" ଏବଂ ଅନ୍ୟ ଏକ ଧାରାରେ xx "The prevailant system of direct payment of Grant-in-aid to the teachers and non-teaching staff of aided educational institutions will be done away with, so that there is no nexus of the Government with teachers."xxx

ରାଜ୍ୟବାସୀ ଜାଣନ୍ତି, ଗତ କଂଗ୍ରେସ ସରକାର ଅମଳରେ ହୋଇଥିବା M.O.U. ଯାହାକୁ ବର୍ତ୍ତମାନର ବି.ଜେ.ଡ଼ି.-ବି.ଜେ.ପି. ସରକାର ଶୁଆ ଭଳି ରଟି ହେଉଛନ୍ତି ସେଥିରେ ଥିଲା, "xx The state government will freeze grant-in-aid to private institutions i.e from 1st July 1999 and the govt orders to this effect will be issued by 15th June 1999."xxx

ବି.ଜେ.ଡ଼ି.-ବି.ଜେ.ପି. ସରକାର ଗତ ୨୦୦୧ ମସିହା ଅକ୍ଟୋବର ତା ୧୧ରିଖର MOUରେ ସିଧାସଳଖ ଭାବରେ ଅନୁଦାନ ଦେବା ସଂପର୍କୀତ ଏପର୍ଯ୍ୟନ୍ତ ଥିବା ସମସ୍ତ ଆଇନ୍ ଓ ନିୟମାବଳୀକୁ ବାତିଲ କରିବାକୁ ଉଲ୍ଲେଖ କରିଛନ୍ତି। ସେଥିରେ ଅଛି xx"In order to overcome the various legal difficulties in freezing grants-in-aid to educational institutions the state government would repeal the existing resolution/rules and replace them through legislation if necessary. Repeal by 31/3/2002 and introduction of legislation if necessary before 31/7/2002."xx

ସଂପ୍ରତି ସେଥିପାଇଁ ଜୁଲାଇ ତା ୩୧ରିଖ ନିଧାର୍ଯ୍ୟ ହୋଇ ବିଧାନସଭାରେ ଘୋଷିତ ହୋଇଛି। ବସ୍ତୁତଃ ତା୧/୬/୯୪ରିଖ ପରେ କୌଣସି ସ୍କୁଲ, କଲେଜକୁ ଅନୁଦାନ ଦିଆଯାଉ ନାହିଁ! ଏପରିକି ୧/୬/୯୪ରୁ ବାକି ରହିଯାଇଥିବା ସ୍କୁଲ, କଲେଜକୁ ମଧ୍ୟ ଦିଆଯାଉ ନାହିଁ! ଯାଉ ନାହିଁ।

ଅନୁଦାନ ଆଇନ/ପ୍ରତ୍ୟକ୍ଷ ଦରମା ଦାନ ପ୍ରଥା ବାତିଲ (repeal) ହୋଇଗଲେ, ଶିକ୍ଷକ ଅଧ୍ୟାପକମାନଙ୍କର ସମସ୍ତ ଚାକିରୀସର୍ତ୍ତ, (ପ୍ରମୋଶନ, କ୍ୟାଡର ଇତ୍ୟାଦିଠାରୁ ଅବସରକାଳୀନ ସୁଯୋଗ ପର୍ଯ୍ୟନ୍ତ) ବାତିଲ ହୋଇଯିବ! ଶିକ୍ଷକ/ଅଧ୍ୟାପକମାନେ ପୁଣି ୩୦ ବର୍ଷ ପୂର୍ବ ଭଳି ଘରୋଇ ଚାକରର ସ୍ଥିତିକୁ ଚାଲିଯିବେ।

ଟାସ୍କଫୋର୍ସ ଅନୁମୋଦନ କରିଛନ୍ତି ଯେ, ଅନୁଦାନ ସଂପର୍କୀତ ସମସ୍ତ ଆଇନ୍‌ଗତ ବ୍ୟବସ୍ଥା ପରିଚାଳନା ସମିତି, ଗଭର୍ଣ୍ଣିବଡିକୁ ଦିଆଯିବା ପାଇଁ ଆଇନ୍ ହେବ। ସରକାର ଶିକ୍ଷକମାନଙ୍କ ଉଦ୍ଦେଶ୍ୟରେ କିଂଚିତ ଅର୍ଥ, ଭାତିଆ ଭଳି ଦେବେ!

**୨। ଶିକ୍ଷାନୁଷ୍ଠାନମାନଙ୍କର ପ୍ରଶାସନ ଓ ପରିଚାଳନା:** ଏଣିକି ଶିକ୍ଷାନୁଷ୍ଠାନ ଖୋଲିବାକୁ ଅନୁମତି, ମଂଜୁରୀ ଓ ସହବନ୍ଧନ ବ୍ୟବସ୍ଥାକୁ ସରଳୀକୃତ କରି ଶିକ୍ଷାନୁଷ୍ଠାନମାନଙ୍କୁ କେବଳ ରେଜେଷ୍ଟ୍ରିକରଣ ବା ପଂଜିକରଣ (ଶିକ୍ଷା ବିଭାଗରେ) କରାଯିବ ଏବଂ ସେଥିପାଇଁ କିଛି ଅର୍ଥ ନିଆଯିବ! ଶିକ୍ଷା ନିର୍ଦ୍ଦେଶକ / ଶିକ୍ଷା ନାରିକ୍ଷକମାନଙ୍କର ଶିକ୍ଷାନୁଷ୍ଠାନ ଉପରେ କୌଣସି ନିୟନ୍ତ୍ରଣ ରହିବ ନାହିଁ। ସେମାନେ ପ୍ରଶାସକ ନହୋଇ, ଶିକ୍ଷାନୁଷ୍ଠାନ ଖୋଲିବା ବା ଚଳାଇବାର ଫାସିଲିଟେଟର ଭାବରେ କାର୍ଯ୍ୟକରିବେ। ଗଭର୍ଣ୍ଣିଂବଡି/ପରିଚାଳନା ସମିତିର ଅନୁମୋଦନ ରହିବ ନାହିଁ ଶିକ୍ଷାନୁଷ୍ଠାନର ପରିଚାଳନା/ନିୟନ୍ତ୍ରଣ ସଂପୂର୍ଣ୍ଣ ଭାବରେ ଗୋଷ୍ଠୀ/ଜନଗଣ/ ଅଭିଭାବକ ସଂଘ ଉପରେ ଛାଡ଼ି ଦିଆଯିବ। ଏହାଫଳରେ ଯଥେଚ୍ଛାଚାର ଘରୋଇକରଣ ହୋଇ, ଶିକ୍ଷା ବ୍ୟବସାୟୀକରଣ ହେବ ବା ଶିକ୍ଷା ଏକ ବେପାର ଭାବରେ ରହିବ। ଶିକ୍ଷକମାନଙ୍କର କୌଣସି ଚାକିରୀ ସର୍ତ୍ତ ରହିବ ନାହିଁ।

**୩। ଠିକା ଶିକ୍ଷକ 'ହାୟାର ଆଣ୍ଡ ଫାୟାର' ନୀତିରେ ନିଯୁକ୍ତ ହେବେ!:** ପ୍ରାଥମିକଠାରୁ ବିଶ୍ୱବିଦ୍ୟାଳୟ ପର୍ଯ୍ୟନ୍ତ ଆଉ ଏଣିକି ଶିକ୍ଷକ ଅଧ୍ୟାପକ ନିଯୁକ୍ତି ନହୋଇ ଠିକା ବା ଅସ୍ଥାୟୀ ଭାବରେ 'ହାୟାର ଆଣ୍ଡ ଫାୟାର' ନୀତିରେ ନିଯୁକ୍ତି ଦିଆଯିବ। ଏହାର ପ୍ରାଥମିକ ପଦକ୍ଷେପ ସ୍ୱରୂପ ଶିକ୍ଷା ସହାୟକ ନାମରେ ମାସିକ ପନ୍ଦରଶହ ଟଙ୍କା ଭତ୍ତାରେ ପ୍ରାଥମିକ, ନିମ୍ନମାଧ୍ୟମିକ ସ୍ତରରେ ଶିକ୍ଷକ/ଶିକ୍ଷିକା ନିଯୁକ୍ତି ହେବା ସଂଗେ ସଂଗେ ସଂପ୍ରତି ହାଇସ୍କୁଲମାନଙ୍କରେ ମଧ୍ୟ ଅଷ୍ଟମ ଶ୍ରେଣୀ ପାଇଁ ରଖାଯାଉଥିବା ଆଳରେ ଶିକ୍ଷା ସହାୟକ ନିଯୁକ୍ତି ଦିଆଯାଉଛି।

ଉଚ୍ଚ ଶିକ୍ଷା ବିଭାଗରେ ପ୍ରଥମ ଶ୍ରେଣୀର ୭୪୨ଟି ପଦବୀ, ଗଣ ଓ ବିଦ୍ୟାଳୟ ଶିକ୍ଷା ବିଭାଗରେ ୮୯ଟି ପଦବୀ ଖାଲି ପଡିଛି। ସେହିଭଳି ଉଚ୍ଚଶିକ୍ଷା ବିଭାଗରେ ୭୯୯ଟି ଦ୍ୱିତୀୟ ଶ୍ରେଣୀ ପଦବୀ, ବିଦ୍ୟାଳୟ ଓ ଗଣଶିକ୍ଷା ବିଭାଗରେ ସର୍ବାଧିକ ୧୬୯୫୧ଟି ତୃତୀୟ ଶ୍ରେଣୀ ପଦବୀ ଖାଲି ପଡ଼ିବା ସଂଗେ ସଂଗେ ଉଚ୍ଚଶିକ୍ଷା ବିଭାଗରେ ୧୪୧୫ଟି ତୃତୀୟ ଶ୍ରେଣୀ ପଦବୀ ଖାଲି ପଡ଼ିଛି। ଏହି ପଦବୀ ଗୁଡିକ ଆଉ ପୂର୍ଣ୍ଣ ହେବ ନାହିଁ।

**୪। ରାସନାଲଇଜେସନ୍ ଓ ରିଡିପ୍ଲୟମେଣ୍ଟ:** ସ୍କୁଲ, କଲେଜମାନଙ୍କରୁ ଯୋଗ୍ୟତା ସମ୍ପନ୍ନ ଶିକ୍ଷକ ଶିକ୍ଷିକା ଅଧ୍ୟାପକ ଅଧ୍ୟାପିକାମାନଙ୍କୁ surplus ବା ଅଧିକା ବୋଲି ଦେଖାଇ, ଶିକ୍ଷକ / ଅଧ୍ୟାପକ ପଦ ଖାଲିଥିବା ସ୍କୁଲ କଲେଜକୁ ନିଆଯାଉଛି। ଏଥିପାଇଁ ହାଇସ୍କୁଲର ତିନି ଶ୍ରେଣୀରେ ୧୨୦ ପିଲା ଥିଲେ, ଜଣେ ଶିକ୍ଷକ ପ୍ରତି ୪୦ ଜଣ ପିଲା ହାରରେ ୩ଜଣ ଶିକ୍ଷକ ଶିକ୍ଷିକା ରହିବେ। ଉଦ୍‌ବୃତ୍ତମାନଙ୍କୁ ରି-ଡିପ୍ଲୁମେଣ୍ଟ କରି ଅନ୍ୟ ସ୍କୁଲକୁ ପଠାଯାଉଛି। ବୋର୍ଡ/ ଏନ୍.ସି.ଇ.ଆର୍.ଟି. ଷ୍ଟାଫିଙ୍ଗ ପ୍ୟାଟର୍ଣ୍ଣ ଯଥା ମୋଟ ୩ ଶ୍ରେଣୀର ହାଇସ୍କୁଲରେ ୨ଜଣ ବିଜ୍ଞାନ ଶିକ୍ଷକ ଜଣେ ପି.ସି.ଏମ୍. ଓ ଜଣେ ସି.ବି.ଜେଡ୍. ଗ୍ରୁପର, ୨ଜଣ କଳା ଶିକ୍ଷକ, ଜଣେ ପ୍ରଧାନଶିକ୍ଷକ, ଜଣେ ହିନ୍ଦୀ, ଜଣେ କ୍ରୀଡା ଶିକ୍ଷକ ରହିବା କଥା। ମାତ୍ର ଷ୍ଟାଫିଙ୍ଗ ପ୍ୟାଟର୍ଣ୍ଣ

ନିର୍ବିଶେଷରେ ଟାସ୍କଫୋର୍ସ ନିର୍ଦ୍ଦେଶ ଅନୁଯାୟୀ ଶିକ୍ଷକ ରହିବେ। ଏହା ଫଳରେ ଏବେ ଜଣେ ଜଣେ ଶିକ୍ଷକ / ଶିକ୍ଷିକା ଦୁଇ ଦିନ ଲେଖାଏଁ ୩ଟି ସ୍କୁଲରେ ବା ୩ ଦିନ ଲେଖାଏଁ ଦୁଇଟି ସ୍କୁଲରେ ପଢ଼ାଉଛନ୍ତି।

ସ୍କୁଲ ସ୍ଥିତି ରାସ୍‌ନାଲାଇଜେସନ୍ ଆଳରେ ମହିଳା ସଶକ୍ତୀକରଣ ବର୍ଷ ଦୁଇଶହରୁ ଅଧିକ ବାଳିକା ସ୍କୁଲ ଏପରିକି ଆଦିବାସୀ ଅଧ୍ୟୁସିତ ଅଞ୍ଚଳରେ ମଧ ଉଠାଇ ଦେଇ, ଶିକ୍ଷକ / ଶିକ୍ଷିକାମାନଙ୍କୁ ଭିନ୍ନ ସ୍ଥାନରେ ଡିପ୍ଲୟମେଣ୍ଟ କରି ଛାତ୍ର ଛାତ୍ରମାନଙ୍କୁ ନିକଟବର୍ତ୍ତୀ ବାଳକ ସ୍କୁଲରେ ପଢ଼ିବାକୁ କୁହାଯାଉଛି। ଏହାଫଳରେ ବାଳିକା ସଂଖ୍ୟା ଶ୍ରେଣୀରୁ ହ୍ରାସ ପାଇଲାଣି।

କଲେଜମାନଙ୍କରୁ ପାଠ୍ୟ ବିଷୟ ଉଠାଇ ଦେଇ, ସେହି ବିଷୟରେ ଅଧ୍ୟାପକ / ଅଧ୍ୟାପିକା ଦରମା ପାଉଥିଲେ ରିଡ଼ିପ୍ଲମେଣ୍ଟରେ ଅଥବା ଦରମା ନପାଉଥିଲେ ବହିଷ୍କାର କରାଯାଉଛି। କେତେକ କଲେଜରୁ ବିଜ୍ଞାନ, କମର୍ସ ଫାକଲଟି ମଧ ଉଠାଇ ନିଆଯାଇଛି-ଯାଉଛି।

ୟୁଜିସି, ଏନ୍.ସି.ଇ.ଆର୍.ଟି. ଜାତୀୟ ଶିକ୍ଷାନୀତି ନିର୍ଦ୍ଧାରିତ ୱାର୍କଲୋଡକୁ ବେଖାତିର କରି ପ୍ରତ୍ୟେକସ୍ତରରେ ୱାର୍କଲୋଡ ବଢ଼ାଇ ଶିକ୍ଷକ ଶିକ୍ଷିକା, ଅଧ୍ୟାପକ, ଅଧ୍ୟାପିକାଙ୍କୁ ରିଡିପ୍ଲୟମେଣ୍ଟ କରାଯିବ। ଶତାଧିକ ସ୍କୁଲ, କଲେଜ ଏହାଫଳରେ ଉଠିଯିବ।

**୫। ବ୍ୟୟ ସଂକୋଚନ ପାଇଁ ପଦକ୍ଷେପ ମାନ:** ପ୍ରାଥମିକ ସ୍ତରରେ ଆବଶ୍ୟକ ସ୍ଥାନରେ ପ୍ରାଥମିକ ବିଦ୍ୟାଳୟ ସ୍ଥାପିତ ନହୋଇ, ବିକଳ୍ପ ବିଦ୍ୟାଳୟ (Alternative School) ଖୋଲାଯିବ- ଏହାଫଳରେ ସଂବିଧାନ ଅନୁଯାୟୀ ସବୁ ପିଲାଙ୍କୁ ସମାନ ଶିକ୍ଷା ବ୍ୟବସ୍ଥା ବ୍ୟାହତ ହେଲେ ମଧ ଏହା କରାଯିବ।

ଉଚ୍ଚ ମାଧମିକ ବା +୨ ସ୍ତରରେ ବାଧତାମୂଳକ ବିଷୟ ସହିତ ମାତ୍ର ୧୦/୧୨ଟି ବିଷୟ ପଢ଼ାଯିବ ଓ ଅନ୍ୟ ବିଷୟଗୁଡିକୁ ଉଠାଇ ଦେଇ ସେ ବିଷୟର ଅଧ୍ୟାପ ଅଧ୍ୟାପିକାମାନଙ୍କୁ ବାହାର କରିଦିଆଯିବ।

## ୬। ଅର୍ଥ ସଂଗ୍ରହ ପାଇଁ ଉପାୟ ମାନ(Resource mobilisation):

କୋଚିଙ୍ଗ ସେଣ୍ଟର ଗୁଡିକୁ ମାନ୍ୟତା ଦେଇ ସେମାନଙ୍କଠାରୁ ପଞ୍ଜୀକରଣ ଫି ଆଦାୟ ହେବା ବେଳେ ସ୍କୁଲ/ଶିକ୍ଷାନୁଷ୍ଠାନକୁ ବିଭିନ୍ନ କର୍ପୋରେଟ୍ ବଡି, ଏଜେନ୍ସି, ଏନ୍.ଜି.ଓ.ମାନଙ୍କୁ ପୋଷ୍ୟ ବିଦ୍ୟାଳୟ ବା ପୋଷ୍ୟ ଶିକ୍ଷାନୁଷ୍ଠାନ (adopted institution) ଭାବରେ ଦିଆଯିବ।

ପ୍ରାଥମିକକୁ ବାଦ୍ ଦେଇ, ବାକି ସବୁ ସ୍ତରରେ ୟୁଜର୍ସ ଫି ଭାବରେ ପିଲାଙ୍କ ଦରମା ଦେବା ପୁନଃପ୍ରଚଳନ କରାଯିବ। ଶିକ୍ଷା ପାଇଁ ପ୍ରମୁଖ ଭାବରେ (କ) ଦାନ, ବଦାନ୍ୟତା ଓ ବୈଦେଶିକ ସହାୟତା (Charity, philanthropy and foreign aid) (ଖ)ଘରୋଇକରଣ ଓ ଉଦାରୀକରଣ (Privatisation and globlisation) and (ଗ) ଗୋଷ୍ଠୀ ଅର୍ଥ ସହାୟତା (Community financing) ଉପରେ ମୁଖ୍ୟତଃ ନିର୍ଭର କରାଯିବ ବୋଲି ଟାସ୍କଫୋର୍ସ ନିର୍ଦ୍ଧାରିତ କରିଛନ୍ତି।

ବିଦେଶୀ ମଦ ବିକ୍ରୀରୁ 'ଶିକ୍ଷା ସେସ୍' ଆଦାୟ କରିବାପାଇଁ ଉଦ୍ୟମ କରାଯିବ ବୋଲି ନିଷ୍ପତ୍ତି ହୋଇଲା। ସର୍ବୋପରି ନୂଆ ସ୍କୁଲ କଲେଜ ଖୋଲିବା ବନ୍ଦ କରାଯିବ ଏବଂ ଯେଉଁ ସ୍କୁଲ କଲେଜ ଖୋଲି, ଅନୁଦାନ ଦିଆଯାଉଛି ସେମାନଙ୍କୁ ବର୍ତ୍ତମାନ ଯେତିକି ମିଳୁଛି, ସେତିକିରେ ଫ୍ରିଜ୍, କରାଯିବ ସଂଗେ ସଂଗେ ଅନେକ ଯୋଗ୍ୟ ସ୍କୁଲମାନଙ୍କୁ ମୁଣ୍ଡାମୁଣ୍ଡି (Consolidated) ସହାୟତା ଦିଆଯିବ।

ଓଡ଼ିଶାର କର୍ମଚାରୀମାନଙ୍କୁ ଦିଆଯାଉଥିବା ଦରମା ଓ ପେନସନ୍ ଅତ୍ୟଧିକ ହୋଇଯାଉଛି ବୋଲି, ବିଶ୍ୱବ୍ୟାଙ୍କ/ଡି.ଏଫ୍.ଆଇ.ଡି. "Unsustainable salary and pension bill"

ବୋଲି କୁହାଯାଇ (କ) କଠୋର ଭାବରେ ନୂତନ ନିଯୁକ୍ତ ବନ୍ଦ (Rgourarly recruitment freeze), ମୌଳିକ ଆରମ୍ଭ ପଦମାନଙ୍କୁ ଉଚ୍ଛେଦ କରି ସେଥିପାଇଁ ବଜେଟ୍ ବ୍ୟୟ ବରାଦ ବନ୍ଦ କରିବା (Withdral budget provision for vaccant posts in basic (entry grade) ଓ ୱାର୍କଚାର୍ଜ ଷ୍ଟାଫ୍, ଏନ୍.ଏମ୍.ଆର୍., ଡି.ଏଲ୍.ଆର୍., ଭାବରେ ନିଯୁକ୍ତ ପଦଗୁଡିକୁ ପୁରାପୁରି ଉଚ୍ଛେଦ କରିବା ଆଦି ଅନୁମୋଦନ ଭିତରେ ମଧ୍ୟ, ଶତକଡ଼ା ୨୦% ଶିକ୍ଷକ ପଦ ବାଦ ପଡିଯିବେ କାରଣ ମୋଟ ସରକାରୀ ଚାକିରିଆ ସଂଖ୍ୟାର ଏକ ପ୍ରମୁଖ ଅଂଶ ଶିକ୍ଷକ।

ଏହାଫଳରେ ଦାରିଦ୍ର୍ୟର ସୀମାରେଖା ତଳେ ବାସ କରୁଥିବା ଓଡ଼ିଶାରୁ ଶତକଡ଼ା ୫୦ ଭାଗ ମଣିଷ, ଆଦିବାସୀ, ହରିଜନ, ଗିରିଜନ, ଗାଁର ଗରୀବ ମଣିଷଙ୍କର ପିଲାମାନେ ଯେଉଁମାନେ ଶାଗ ପଖାଳ ଖାଇ ସ୍କୁଲକୁ ଆସି ପାରୁଥିଲେ, ସେମାନେ ଆଉ ବିଦ୍ୟାଳୟର ସରହଦ ମାଡ଼ି ପାରିବେ ନାହିଁ। ଡ୍ରପ୍ ଆଉଟ୍ କେବଳ ନୁହେଁ, ପୁସ୍ ଆଉଟ୍ ସଂଖ୍ୟା ବୃଦ୍ଧି ପାଇବ ଏବଂ ଗତ ଅଢ଼େଇ ବର୍ଷ ଭିତରେ ଲକ୍ଷଣୀୟ ଭାବରେ ମାଇନର ଶ୍ରେଣୀରୁ +୨ ଶ୍ରେଣୀ ପର୍ଯ୍ୟନ୍ତ ପ୍ରତ୍ୟେକ ସ୍ତରରେ ଗତ ୨୦୦୦ ମସିହା ଜୁଲାଇ ଛାତ୍ର ଭର୍ତ୍ତି ସଂଖ୍ୟା ପରୀକ୍ଷାର୍ଥୀ ସଂଖ୍ୟା କୋଡିଏ ହଜାରରୁ ତିରିଶ ହଜାର ପର୍ଯ୍ୟନ୍ତ ହ୍ରାସ ପାଇଛି।

● *ଅବନୀ କୁମାର ବରାଳ*

# ଆର୍ଥିକ କ୍ଷେତ୍ର ସଂସ୍କାରର ଦଶ ବର୍ଷ: ଏକ ହିସାବ ନିକାଶ

## ଉପକ୍ରମ:

ଅର୍ଥନୀତି କହିଲେ ସ୍ଥୂଳତଃ, ଉତ୍ପାଦନ ଓ ବଣ୍ଟନର ଶାସ୍ତ୍ରକୁ ବୁଝାଏ। ଅର୍ଥନୀତିର ମୁଖ୍ୟ କ୍ଷେତ୍ର ତିନୋଟି। କୃଷି କ୍ଷେତ୍ର (ପ୍ରାଥମିକ), ଶିଳ୍ପ କ୍ଷେତ୍ର (ସହାୟକ) ଏବଂ ସେବା କ୍ଷେତ୍ର (ଟର୍ସିଆରୀ ବା ଉପସହାୟକ)। ଆର୍ଥିକ କ୍ଷେତ୍ର, ସେବା କ୍ଷେତ୍ରର ଅନ୍ୟତମ ପ୍ରମୁଖ ଅଙ୍ଗ। ଆର୍ଥିକ କ୍ଷେତ୍ରର ମଧ୍ୟ ମୁଖ୍ୟତଃ ତିନୋଟି ଅଙ୍ଗ ରହିଛି। ତାହା ହେଲା ପୁଂଜି ବଜାର (Capital Market),ବ୍ୟାଙ୍କିଙ୍ଗ୍ କ୍ଷେତ୍ର ଏବଂ ବୀମା କ୍ଷେତ୍ର। ସଂସ୍କାରର ଦଶ ବର୍ଷ ଭାରତୀୟ ଅର୍ଥନୀତିର ବିଭିନ୍ନ କ୍ଷେତ୍ରରେ କଳ୍ପନାତୀତ ପରିବର୍ତ୍ତନ ଘଟାଇଛି। ସେସବୁର ଆକଳନ ଏହି ଆଲୋଚନାର ପରିସର ବହିର୍ଭୂତ। ମାତ୍ର ଆର୍ଥିକ କ୍ଷେତ୍ରରେ ଏହି ସଂସ୍କାର କି ପ୍ରକାର ପରିବର୍ତ୍ତନମାନ ସଂଗଠିତ କରିଚାଲିଛି ଏବଂ ତା'ର ସୁଦୂରପ୍ରସାରୀ କୁପରିଣାମ ସଂପର୍କରେ ସଚେତନତା ସୃଷ୍ଟି କରିବା ଏହି ଆଲୋଚନାର ମୁଖ୍ୟ ଲକ୍ଷ୍ୟ।

ଭାରତୀୟ ସମାଜ ଉପରେ ନବ୍ୟ-ଉଦାର ଅର୍ଥନୀତିର ପ୍ରଭାବର ଭଲ ମନ୍ଦ ବିଚାର କରିବା ଲାଗି ଏକ ଦଶକର ଅଭିଜ୍ଞତା କିଛି କମ୍ ଅଭିଜ୍ଞତା ନୁହେଁ। ଆମ ଦେଶରେ ୧୯୯୧ରେ ଅର୍ଥନୈତିକ ସଂସ୍କାର କାର୍ଯ୍ୟକ୍ରମ ଆରମ୍ଭ ହେଲା। କୁହାଗଲା, ଜନସାଧାରଣଙ୍କ ମଙ୍ଗଳ ନିମନ୍ତେ ଏହି ସଂସ୍କାର ଅପରିହାର୍ଯ୍ୟ। ଭାରତୀୟ ଅର୍ଥନୀତିକୁ ବିଶ୍ୱ ବଜାର ସହିତ ଏକାକାର କରିବା ଲାଗି ଉଦ୍ୟମ ହେଲା। ଯେକୌଣସି ଦେଶର ଜାତୀୟ ଅର୍ଥନୀତିର ମୂଳ ଲକ୍ଷ୍ୟ ହେବା ଉଚିତ୍ ସେହି ଦେଶର ନାଗରିକମାନଙ୍କର କଲ୍ୟାଣସାଧନ। ଏହା ତର୍କାତୀତ। ଏବେ ଆମକୁ ବିଚାର କରିବାକୁ ପଡ଼ିବ, ଗତ ଦଶ ବର୍ଷରେ ଆମେ ଏ ଦିଗରେ କେତେ ଦୂର ଅଗ୍ରଗତି କରିଛେ? ଦଶ ବର୍ଷର ସଂସ୍କାର ଓ ନବ୍ୟ-ଉଦାର ଅର୍ଥନୀତି ଭାରତର ଆଭିଜାତ୍ୟବର୍ଗ (elite)ର ଲୋକଙ୍କୁ ସମୃଦ୍ଧିଶାଳୀ କରିଛି। ବିପୁଳ ସଂଖ୍ୟାଗରିଷ୍ଠ ଲୋକଙ୍କର ଜୀବନଧାରଣରମାନକୁ ନିମ୍ନଗାମୀ କରିଚାଲିଛି। ସରକାରୀ ପରିସଂଖ୍ୟାନରୁ ସ୍ପଷ୍ଟ ଯେ ଏହି ଦଶକରେ ବେକାରୀ, ଦାରିଦ୍ର୍ୟ ଓ କ୍ଷୁଧା ତୀବ୍ର ହୋଇଛି। ଭାରତୀୟ ଅର୍ଥନୀତି ଗଭୀର, ଅଭୂତପୂର୍ବ ସଂକଟର ଆବର୍ତ୍ତରେ ନିକ୍ଷିପ୍ତ ହୋଇଛି।

**ସଂସ୍କାର ଓ ଆର୍ଥିକ କ୍ଷେତ୍ର:** ନବ୍ୟ-ଉଦାର ନୀତିର ଏକ ମୁଖ୍ୟ କଥା ହେଉଛି ଆର୍ଥିକ କ୍ଷେତ୍ରର ଉଦାରୀକରଣ, ଆଜିର ଜଗତିକରଣର ଅର୍ଥ ହେଉଛି ଲଗାଣ ପୁଂଜିର ଜଗତିକରଣ। ତେଣୁ ଆନ୍ତର୍ଜାତୀୟ ଲଗାଣ ପୁଂଜିର ଦାବି ଓ ଚାହିଦା ମୁତାବକ ଭାରତୀୟ ଆର୍ଥିକ କ୍ଷେତ୍ରରେ ସଂସ୍କାର ଅଣାଯାଉଛି। ଆର୍ଥିକ କ୍ଷେତ୍ରର ଉଦାରୀକରଣର ବିରାଟ ପ୍ରଭାବ ପଡିଛି ଓ ପଡୁଛି ଭାରତୀୟ ସମାଜ ଉପରେ।

ଭାରତର ଆର୍ଥିକ କ୍ଷେତ୍ର ବର୍ଷ ବର୍ଷ ଧରି ପ୍ରକୃତ ଅର୍ଥନୀତି (real economy)ର ଚାଳିକା ଶକ୍ତିରୂପେ କାର୍ଯ୍ୟ କରି ଆସିଛି। ସାଧାରଣତଃ, ପ୍ରକୃତ ଅର୍ଥନୀତି ଲଗାଣ ପୁଂଜିର ସହାୟତାରେ ସଂପଦ ସୃଷ୍ଟି କରିଥାଏ। କିନ୍ତୁ ଲଗାଣ ପୁଂଜିର ଆନ୍ତର୍ଜାତୀୟକରଣ ଏହି ଅବଧାରଣାକୁ ପୁରାପୁରି

ବଦଳାଇ ଦେଇଚି। ଏହି ପୁଞ୍ଜିର ଫଟକା ବଜାରୀ ଚରିତ୍ର (speculative nature) ଫଳରେ ପ୍ରକୃତ ଅର୍ଥନୀତି ବାହାରେ (independent of the real economy) ସଂପଦ ସୃଷ୍ଟି ହେଉଛି। ସରକାର ବିଦେଶୀ ପୁଞ୍ଜିକୁ ଆକର୍ଷଣ କରିବାପାଇଁ ଆର୍ଥିକ କ୍ଷେତ୍ରର ସଂସ୍କାର କଲେ। ଆଶା କରିଥିଲେ, ବିଦେଶୀ ପୁଞ୍ଜି ଆସିଲେ ଅର୍ଥନୈତିକ ବିକାଶ ତ୍ୱରାନ୍ୱିତ ହେବ। କୁହାଗଲା, ଭାରତୀୟ ଅର୍ଥନୀତିରେ ସମ୍ବଳ (resources)ର ଅଭାବ ରହିଛି ଏବଂ ବିଦେଶୀ ପୁଞ୍ଜି, ଅର୍ଥନୈତିକ ବିକାଶ ପାଇଁ ଆବଶ୍ୟକ ଅର୍ଥ ଯୋଗାଇବ। ସେଥିଲାଗି ବ୍ୟାଙ୍କିଙ୍ଗ୍, ବୀମା ଓ ପୁଞ୍ଜି ବଜାର ପରି ପ୍ରମୁଖ ଆର୍ଥିକ କ୍ଷେତ୍ରଗୁଡିକରେ ସଂସ୍କାର କରାଗଲା ଯଦ୍ୱାରା ବିଦେଶୀ ପୁଞ୍ଜି ବିନା ବାଧାରେ ଦେଶ ଭିତରକୁ ପ୍ରବେଶ କରିପାରିବ।

## ପ୍ରତ୍ୟକ୍ଷ ବିଦେଶୀ ବିନିଯୋଗ-ଏକ ମରିଚିକା !

ଯୁକ୍ତି ବଢ଼ାଗଲା, ଏସବୁ ପଦକ୍ଷେପ ଫଳରେ ଦେଶରେ ବର୍ଷକୁ ଅନ୍ତତଃ ୧୦ ହଜାର କୋଟି (୧୦ ବିଲିଅନ୍) ଡଲାର ପ୍ରତ୍ୟକ୍ଷ ବିଦେଶୀ ବିନିଯୋଗ ହେବ। ଏହା କିନ୍ତୁ ଏକ ମରିଚିକାରେ ପରିଣତ ହୋଇଛି। ଏବେ ତଥ୍ୟ ପ୍ରକାଶ ପାଉଛି ଯେ ଗତ ଦଶ ବର୍ଷରେ ବର୍ଷକୁ ମାତ୍ର ହାରାହାରି ୨ ବିଲିଅନ୍ ଡଲାର ପ୍ରତ୍ୟକ୍ଷ ବିଦେଶୀ ବିନିଯୋଗ ହୋଇଛି। ତା'ଛଡା ଯାହାବା ପ୍ରତ୍ୟକ୍ଷ ବିଦେଶୀ ବିନିଯୋଗ ହୋଇଛି ତାହା ଦେଶ ଭିତରେ ଥିବା ଉତ୍ପାଦନ କ୍ଷମତାକୁ (existing capacity) କବ୍‌ଜା ବା ଦଖଲ କରିବାରେ ବିନିଯୋଗ ହୋଇଚି। କୌଣସି ନୂତନ ସଂପଦ ବା ଉତ୍ପାଦନ କ୍ଷମତା ସୃଷ୍ଟି କରିବାରେ ସହାୟକ ହୋଇ ନାହିଁ। କିନ୍ତୁ ସେୟାର ବଜାର (stock market)ରେ ବିଦେଶୀ ବିନିଯୋଗକାରୀ ପ୍ରତିଷ୍ଠାନମାନଙ୍କର (Foreign institutional investors) ବିନିଯୋଗ (Portfolio investments) ଉଲ୍ଲେଖନୀୟ ଭାବେ ବୃଦ୍ଧି ପାଇଛି। ସରକାର ଷ୍ଟକ୍ ମାର୍କେଟଗୁଡିକୁ ଉତ୍ସାହିତ କରିଛନ୍ତି। ଏହାର ଅଭିବୃଦ୍ଧିକୁ ଅର୍ଥନୈତିକ ଅଭିବୃଦ୍ଧିର ଆଖ୍ୟା ଦେଇ ଲୋକଙ୍କର ସଞ୍ଚୟ ଯେପରି ଷ୍ଟକ୍ ମାର୍କେଟଗୁଡିକୁ ମୁହାଁଏ ସେଥିଲାଗି ନାନା ବ୍ୟବସ୍ଥା ଗ୍ରହଣ କରିଛନ୍ତି। କ୍ରମାଗତ ଭାବେ ସ୍ୱଳ୍ପ ସଞ୍ଚୟ ଉପରେ ସୁଧର ହାର କମାଯାଇ ଅଂଶଧନ ସହିତ ସଂଶ୍ଳିଷ୍ଟ ସଞ୍ଚୟ (equity linked savings) ଉପରେ ଟିକସ୍ ରିହାତି ଦିଆଯାଉଛି। ଶ୍ରମଜୀବୀ ତଥା ସାଧାରଣ ଲୋକଙ୍କର ସଞ୍ଚୟକୁ ଷ୍ଟକ୍ ମାର୍କେଟ୍ ଆଡକୁ ଆକର୍ଷିତ କରାଯାଉଛି। ପ୍ରତିଟି ବଜେଟ୍‌ରେ ଷ୍ଟକ୍ ମାର୍କେଟ୍‌ଗୁଡିକୁ ପ୍ରୋତ୍ସାହନ ଦିଆଯାଉଛି ଏବଂ ସେଗୁଡିକୁ ଯେପରି ବିଦେଶୀ ବିନିଯୋଗକାରୀ ପ୍ରତିଷ୍ଠାନମାନଙ୍କ ପାଇଁ ସହାୟକ ହେବେ ତା'ର ବ୍ୟବସ୍ଥା କରାଯାଉଛି।

## ପୁଂଜି ବଜାର (capital Market) ଉପରେ ସଂସ୍କାରର ପ୍ରଭାବ

ଉପରୋକ୍ତ ନୀତି ଫଳରେ ପୁଞ୍ଜି ବଜାରର ନିୟନ୍ତ୍ରଣ ଫଟକା ବଜାରୀମାନଙ୍କ ହାତକୁ ଚାଲି ଯାଉଛି। ପୁଞ୍ଜି ବଜାରର ସ୍ଥିରତା (stability) ନଷ୍ଟ ହେବାରେ ଲାଗିଛି। ବମ୍ବେ ଷ୍ଟକ୍ ଏକ୍ସଚେଞ୍ଜର ସେନ୍‌ସିଟିଭ୍ ଇଣ୍ଡେକ୍ସ୍ (sensex) ୬୦୦୦ ପଏଣ୍ଟ ଉପରକୁ ଉଠିଗଲା। ମାତ୍ର ଯେଉଁସବୁ କଂପାନୀର ଅଂଶଧନର ମୂଲ୍ୟକୁ କୃତ୍ରିମ ଭାବରେ ବଢ଼ାଯାଇ ଏହା କରାଗଲା ସେସବୁ କଂପାନୀର ଅଭିବୃଦ୍ଧି ବା ଉପାର୍ଜନ କ୍ଷମତା (growth potential or earning capacity) ସହିତ ଏହାର କୌଣସି ସଂପର୍କ ନଥିଲା। ବିଦେଶୀ ବିନିଯୋଗକାରୀ ପ୍ରତିଷ୍ଠାନ (FII) ମାନଙ୍କର ସଂପୂର୍ଣ୍ଣ ପ୍ରୋତ୍ସାହନରେ ବଡ଼ ବଡ଼ ସେୟାର ଦଲାଲମାନଙ୍କ କାରସାଦି ଫଳରେ ଏ ଯେଉଁ କୃତ୍ରିମ ବେଲୁନ୍ ଫୁଲିଥିଲା ତାହା ଖୁବ୍ ଶୀଘ୍ର ଫାଟି ଗଲା। ସେନ୍‌ସେକ୍ସ୍ ହଠାତ୍ କମିଯାଇ ୨୨୦୦ ପଏଣ୍ଟରେ ପହଞ୍ଚିଲା। ଏହା ଫଳରେ କ୍ଷୁଦ୍ର ବିନିଯୋଗକାରୀମାନେ ସର୍ବସ୍ୱ ହରାଇ ବସିଲେ। ସେମାନଙ୍କର ସଂପଦ ଆଖି ପିଛୁଳାକେ ଉଭେଇ ଗଲା। ଷ୍ଟକ୍ ମାର୍କେଟ୍ ଜାଲିଆତିରେ ସେମାନେ ହଜାର ହଜାର କୋଟି ଟଙ୍କା ହରାଇଲେ। ୟୁ.ଟି.ଆଇ.ର ୟୁ.ଏସ୍.-୬୪ ସ୍କିମ୍‌ରେ ଅର୍ଥ ବିନିଯୋଗ କରିଥିବା କୋଟି

କୋଟି କ୍ଷୁଦ୍ର ବିନିଯୋଗକାରୀଙ୍କର ସଞ୍ଚୟର ମୂଲ୍ୟ ବ୍ୟାପକ ଭାବେ ହ୍ରାସ ପାଇଲା । ମ୍ୟୁଚୁଆଲ୍ ଫଣ୍ଡ ଗୁଡିକରେ ଅଂଶଧନ ସହିତ ସଂଶ୍ଳିଷ୍ଟ ସଞ୍ଚୟ ଯୋଜନାରେ ଅର୍ଥ ସଞ୍ଚୟ କରିଥିବା କ୍ଷୁଦ୍ର ବିନିଯୋଗକାରୀମାନଙ୍କର ଅବସ୍ଥା ମଧ ଅନୁରୂପ ଭାବେ ଶୋଚନୀୟ ହୋଇ ପଡିଲା । ସଂସ୍କାର-ଦଶକର ଆଦ୍ୟ ବର୍ଷଗୁଡିକରେ ସି.ଆର.ଦି. କ୍ୟାପିଟାଲ୍ ପରି ନନ୍ ବ୍ୟାଙ୍କିଙ୍ଗ୍ ଆର୍ଥିକ ସଂସ୍ଥାଗୁଡିକର ଜମାକାରୀମାନେ ଷ୍ଟକ୍ ମାର୍କେଟ୍ ଜାଲିଆତି ଫଳରେ ପ୍ରଭୂତ କ୍ଷତିର ସମ୍ମୁଖୀନ ହୋଇଥିଲେ । ଏବେ ମହାରାଷ୍ଟ୍ରର ମାଧପୁରା ସମବାୟ ବ୍ୟାଙ୍କ୍ ଓ ଆନ୍ଧ୍ରର କୃଷି ବ୍ୟାଙ୍କର ଜମାକାରୀମାନେ ଅନୁରୂପଭାବେ ଶୋଚନୀୟ କ୍ଷତିର ସମ୍ମୁଖୀନ ହୋଇଛନ୍ତି । ଷ୍ଟକ୍ ମାର୍କେଟ୍ ବିନିଯୋଗ ଉପରେ ଅତ୍ୟଧିକ ନିର୍ଭରଶୀଳତା ଫଳରେ ଏସବୁ ସଂସ୍ଥାଗୁଡିକ ବୁଡିଛନ୍ତି ଏବଂ ଜମାକାରୀମାନଙ୍କୁ ବୁଡାଉଛନ୍ତି । ବ୍ୟାଙ୍କ୍ ଅଫ୍ କ୍ରେଡିଟ୍ ଆଣ୍ଡ କମର୍ସ ଇଣ୍ଟରନ୍ୟାସ୍‌ନାଲ୍ ପରି ନୂତନ ପ୍ରଜନ୍ମର ବ୍ୟାଙ୍କ ମଧ ଅନୁରୂପ କାରଣରୁ ଭୁଷୁଡି ପଡିଛି । ଆମ ଦେଶରେ ଅନାହାର ମୃତ୍ୟୁ ଓ ଚାଷୀମାନଙ୍କର ଆତ୍ମହତ୍ୟା ଘଟଣା ଦେହସୁହା ହୋଇ ଆସୁଛି । ଏଥି ସହିତ ସେୟାର ଦଲାଲ୍‌ମାନଙ୍କର ଆତ୍ମହତ୍ୟା ଘଟଣା ଏବେ ନୂତନ ଭାବେ ସଂଯୋଜିତ ହୋଇଛି । ଆର୍ଥିକ କ୍ଷେତ୍ର ବିଶେଷତଃ ଷ୍ଟକ୍ ମାର୍କେଟ୍ ଉପରେ ଲୋକଙ୍କର ଆସ୍ଥା ସଂପୂର୍ଣ୍ଣ ଭାବେ ତୁଟି ଯାଉଛି । ଅନେକ ପ୍ରାଇମେରୀ ଇସ୍ୟୁ (ବଣ୍ଡ, ସେୟାର ଇତ୍ୟାଦି)ର ବିଫଳତାରୁ ଏହା ସ୍ପଷ୍ଟ । ଗତ କେତେ ବର୍ଷ ମଧରେ ଭାରତର କୌଣସି ନୂତନ ପ୍ରାଇମେରୀ ଇସ୍ୟୁ ବଜାରକୁ ଆସିନାହିଁ । ଷ୍ଟକ୍ ମାର୍କେଟ୍ ଗୁଡିକର ଦେଶରେ ବିନିଯୋଗ ପାଇଁ ପୁଞ୍ଜି ସଂଗ୍ରହ କରିବାର ସାମର୍ଥ୍ୟ ସାଂଘାତିକ ଭାବେ ସଂକୁଚିତ ହେବାରେ ଲାଗିଛି ।

## ବ୍ୟାଙ୍କିଙ୍ଗ୍ କ୍ଷେତ୍ର :

ବ୍ୟାଙ୍କ୍ ଶିଳ୍ପରେ 'ସଂସ୍କାର' ଫଳରେ ବ୍ୟାଙ୍କ ଗୁଡିକର ସମ୍ବଳ ସଂଗ୍ରହ କରିବା ଏବଂ ସାମାଜିକ କ୍ଷେତ୍ରରେ ତାହା ବିନିଯୋଗ କରିବାର ସାମର୍ଥ୍ୟ କ୍ଷୁର୍ଣ୍ଣ ହୋଇଛି । ଭାରତ ବର୍ଷରେ ରାଷ୍ଟ୍ରାୟତ୍ତ ବ୍ୟାଙ୍କ୍‌ଗୁଡିକ ରାଷ୍ଟ୍ରର ଉନ୍ନୟନରେ ଏକ ପ୍ରମୁଖ ଭୂମିକା ପାଳନ କରିଛନ୍ତି । ୧୯୬୯ରେ ୧୪ଟି ବ୍ୟାଙ୍କ୍ ଏବଂ ୧୯୮୦ରେ ୬ଟି ବ୍ୟାଙ୍କ୍‌ର ଜାତୀୟକରଣ ଫଳରେ ଭାରତରେ ବ୍ୟାଙ୍କିଙ୍ଗ୍ ବ୍ୟବସ୍ଥାରେ ବୈପ୍ଳବିକ ପରିବର୍ତ୍ତନ ଆସିଥିଲା । ବଡ ବଡ଼ିଆଙ୍କ ପାଇଁ ବ୍ୟାଙ୍କିଙ୍ଗ୍ (class banking) ବଦଳରେ ସର୍ବସାଧାରଣଙ୍କ ପାଇଁ ବ୍ୟାଙ୍କିଙ୍ଗ୍ (Mass banking) ନୀତି ଗ୍ରହଣ କରାଯାଇଥିଲା । ଅର୍ଥନୈତିକ ଉନ୍ନୟନରେ ରାଷ୍ଟ୍ରାୟତ୍ତ ବ୍ୟାଙ୍କଗୁଡ଼ିକ ନୂତନ ଭାବେ ଏକ ସକ୍ରୀୟ ଭୂମିକା ପାଳନ କରିଥିଲେ । ୧୯୬୯ରୁ ୧୯୯୧ ଥିଲା ଭାରତୀୟ ବ୍ୟାଙ୍କିଙ୍ଗ୍ ବ୍ୟବସ୍ଥାର ଇତିହାସର ସୁବର୍ଣ୍ଣ ଯୁଗ ସଦୃଶ । ଦୂର ଦୂରାନ୍ତରେ ଥିବା ଦୁର୍ଗମ ଗ୍ରାମାଞ୍ଚଳକୁ ବ୍ୟାଙ୍କ୍ ସେବା ସଂପ୍ରସାରିତ ହେବା ଫଳରେ ଗ୍ରାମାଞ୍ଚଳର ଲୋକେ ଉପକୃତ ହୋଇଥିଲେ । ୧୯୬୯ରୁ ୧୯୯୯ ମଧରେ ବ୍ୟାଙ୍କ୍‌ଗୁଡିକର ବ୍ରାଞ୍ଚ୍ ସଂଖ୍ୟା ୮୦୦୦ରୁ ବଢ଼ି ୪୬୦୦୦ରେ ପହଞ୍ଚିଛି । କୃଷି ଋଣର ପରିମାଣ ୧୬୨ କୋଟି ଟଙ୍କାରୁ ବୃଦ୍ଧି ପାଇ ୨୧୦୦୦ କୋଟି ଟଙ୍କାରେ ପହଞ୍ଚିଛି । ଫଳରେ ଦେଶକୁ ଖାଦ୍ୟ ଉତ୍ପାଦନରେ ଆତ୍ମନିର୍ଭରଶୀଳ କରାଇବାରେ ଏହା ସହାୟକ ହୋଇଛି । ଅଗ୍ରାଧିକାର କ୍ଷେତ୍ରରେ ଋଣ (priority sector lending) ପରିମାଣ ୧୯୬୯ରୁ ୧୯୯୯ ମଧରେ ୪୪୧ କୋଟି ଟଙ୍କାରୁ ବଢ଼ି ୫୩୦୦୦ କୋଟି ଟଙ୍କାରେ ପହଞ୍ଚିଛି । ବିଦ୍ୟୁତ୍, ଇସ୍ପାତ୍ ପରି ଗୁରୁତ୍ୱପୂର୍ଣ୍ଣ କ୍ଷେତ୍ରର ବିକାଶରେ ରାଷ୍ଟ୍ରାୟତ୍ତ ବ୍ୟାଙ୍କ୍‌ଗୁଡିକ ଉଲ୍ଲେଖନୀୟ ଭୂମିକା ପାଳନ କରିଛନ୍ତି । ଏହି ବ୍ୟାଙ୍କ୍‌ଗୁଡିକ କ୍ଷୁଦ୍ର ଶିଳ୍ପ କ୍ଷେତ୍ରର ବିକାଶରେ ସହାୟକ ହୋଇଛନ୍ତି । ଗ୍ରାମାଞ୍ଚଳରେ କୃଷିର ବିକାଶ ପାଇଁ ଏବଂ ଦୁର୍ବଳ ଶ୍ରେଣୀର ଲୋକଙ୍କୁ ଜୀବିକା ପାଇଁ ଋଣ ଯୋଗାଇଛନ୍ତି । ଅନେକ ଦାରିଦ୍ର୍ୟ ଦୂରୀକରଣ ଯୋଜନା ଏବଂ କର୍ମଯୋଗାଣ ଯୋଜନାର ସଫଳ ରୂପାୟନରେ ରାଷ୍ଟ୍ରାୟତ୍ତ ବ୍ୟାଙ୍କଗୁଡ଼ିକ ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ପାଳନ କରିଛନ୍ତି । ଏହିପରି ଭାବେ ଜାତୀୟ ଅର୍ଥନୀତିର ବିକାଶରେ ରାଷ୍ଟ୍ରାୟତ୍ତ ବ୍ୟାଙ୍କ୍‌ଗୁଡିକର ଅବଦାନ ଉଲ୍ଲେଖନୀୟ ।

ଜାତୀୟକରଣ ପରବର୍ତ୍ତୀ ସମୟରେ ବ୍ୟାଙ୍କ୍ ଗୁଡିକ ହାସଲ କରିଥିବା ଅଗ୍ରଗତିକୁ ସଂପୂର୍ଣ୍ଣ ଭାବେ ଧ୍ୱଂସ କରିଦେବା ହେଉଛି ବ୍ୟାଙ୍କିଙ୍ଗ୍ କ୍ଷେତ୍ରରେ ସଂସ୍କାରର ଲକ୍ଷ୍ୟ। ଋଣ ନୀତି, ସୁଧ ହାର, ସର୍ବନିମ୍ନ ଗଚ୍ଛିତ ପୁଞ୍ଜିର ପରିମାଣ (capital adequacy norms) ସବୁ କିଛି ସ୍ଥିର କରାଯାଉଛି ଆନ୍ତର୍ଜାତୀୟ ଲଗାଣ ପୁଞ୍ଜିର ସ୍ୱାର୍ଥରେ। ରାଷ୍ଟ୍ରାୟତ୍ତ ବ୍ୟାଙ୍କଗୁଡିକ ସରକାରଙ୍କ ନିୟନ୍ତ୍ରଣାଧୀନ ରହି ବ୍ୟାଙ୍କିଙ୍ଗ୍ କ୍ଷେତ୍ରରେ ସରକାରଙ୍କର ରାଜନୈତିକ ସିଦ୍ଧାନ୍ତ କାର୍ଯ୍ୟକାରୀ କରି ଆସିଛନ୍ତି। ଏବେ କିନ୍ତୁ ସେମାନଙ୍କର ପର୍ବତ ପ୍ରମାଣ ଅନାଦେୟ ଋଣ ବା ଅଚଳ ପୁଞ୍ଜି (non performing assets) ପାଇଁ ସେମାନଙ୍କୁ ହିଁ ଦାୟୀ କରାଯାଉଛି। ଏହି ଅନାଦେୟ ଋଣର ପରିମାଣ ପାଖାପାଖି ୬୦,୦୦୦ କୋଟି ଟଙ୍କା। ଏହାର ୮୦ ରୁ ୮୫ ଭାଗ ବାକି ପଡିଛି ବଡ଼ ବଡ଼ ଶିଳ୍ପପତିଙ୍କ ଉପରେ। ଏଗୁଡିକ ଆଦାୟ କରିବା ପାଇଁ ସରକାର ବ୍ୟାଙ୍କଗୁଡିକୁ ସାହାଯ୍ୟ କରିବା ତ ଦୂରର କଥା, ଓଲଟି ଏହାରି ଆଳରେ ରାଷ୍ଟ୍ରାୟତ୍ତ ବ୍ୟାଙ୍କ୍‌ଗୁଡିକୁ ରୁଗ୍ଣ ବୋଲି ଘୋଷଣା କରି ଘରୋଇକରଣର ପଥ ପ୍ରଶସ୍ତ କରାଯାଉଛି। ସରକାର ରାଷ୍ଟ୍ରାୟତ୍ତ ବ୍ୟାଙ୍କ୍‌ଗୁଡିକରେ ନିଜର ଅଂଶଧନକୁ ୩୩%କୁ କମାଇ ଆଣିବାକୁ ଚାହୁଁଛନ୍ତି। ଏହା ଫଳରେ ସାମାଜିକ କ୍ଷେତ୍ର କ୍ଷତିଗ୍ରସ୍ତ ହେବ ଏବଂ ଦୁର୍ବଳ ବର୍ଗର ଲୋକେ ବ୍ୟାଙ୍କିଙ୍ଗ୍ ସେବାରୁ ବଞ୍ଚିତ ହେବେ। ଏବେ ଭାରତ ବର୍ଷରେ ୩୩ଟି ଘରୋଇ ବ୍ୟାଙ୍କ୍ ଓ ୪୩ଟି ବିଦେଶୀ ବ୍ୟାଙ୍କ୍ ବ୍ୟବସାୟ କରୁଛନ୍ତି। ଏମାନଙ୍କ ମଧ୍ୟରୁ ଅଧିକାଂଶ ବଡ଼ ବଡ ସହରରେ ବ୍ୟବସାୟ କରୁଛନ୍ତି ଏବଂ ଧନୀକ ଗୋଷ୍ଠୀଙ୍କୁ ବ୍ୟାଙ୍କ୍ ସେବା ପ୍ରଦାନ କରୁଛନ୍ତି। ଏମାନଙ୍କ ସହ ପ୍ରତିଯୋଗିତାରେ ତିଷ୍ଠିବା ନିମନ୍ତେ ରାଷ୍ଟ୍ରାୟତ୍ତ ବ୍ୟାଙ୍କ୍‌ଗୁଡିକୁ mass bankingର ଧାରଣା ପରିତ୍ୟାଗ କରିବା ଲାଗି ବାଧ୍ୟ କରାଯାଉଛି। ଗ୍ରାମାଞ୍ଚଳର ବ୍ୟାଙ୍କ ଶାଖାଗୁଡିକ ବନ୍ଦ କରିବା ଲାଗି ବାଧ୍ୟ କରାଯାଉଛି। ଏହାଫଳରେ କ୍ଷୁଦ୍ର ଚାଷୀମାନଙ୍କର ଋଣ ସମସ୍ୟା (credit needs) ଗୁରୁତର ହେବ ଏବଂ ଗ୍ରାମାଞ୍ଚଳର ଭିତ୍ତିଭୂମି ପାଇଁ ଆବଶ୍ୟକ ପୁଞ୍ଜି ବିନିଯୋଗ ମଧ୍ୟ ବ୍ୟାହତ ହେବ। ବ୍ୟାଙ୍କ ଗୁଡିକର ଷ୍ଟକ୍ ମାର୍କେଟ୍ ଉପରେ ଅତ୍ୟଧିକ ନିର୍ଭରଶୀଳତା (exposure)ରେ ମଧ୍ୟ ବିପଦ ଭରି ରହିଛି। ରାଷ୍ଟ୍ରାୟତ୍ତ ବ୍ୟାଙ୍କଗୁଡିକର ଅଭିବୃଦ୍ଧି ଦେଶରେ ବ୍ୟାପକ କର୍ମଯୋଗାଣର ସୁଯୋଗ ସୃଷ୍ଟି କରିଥିଲା। ଆଜି ଏହି ତଥାକଥିତ ସଂସ୍କାର ବ୍ୟାଙ୍କ୍‌ଗୁଡିକୁ କର୍ମଚାରୀ ସଂଖ୍ୟା ହ୍ରାସ (downsizing) ପାଇଁ ବାଧ୍ୟ କରୁଛି। ଏପର୍ଯ୍ୟନ୍ତ ବ୍ୟାଙ୍କ ଶିଳ୍ପରୁ ପ୍ରାୟ ୧,୩୦,୦୦୦ କର୍ମଚାରୀ/ ଅଫିସର ସ୍ୱେଚ୍ଛା ଅବସର(VRS) ନେବାକୁ ବାଧ୍ୟ ହୋଇଛନ୍ତି। ଏହା ଦେଶର ବେକାରୀ ସମସ୍ୟାକୁ ଅଧିକ ଗୁରୁତର କରିଛି।

## ବୀମା ଶିଳ୍ପ :

ଆନ୍ତର୍ଜାତୀୟ ଲଗାଣ ପୁଞ୍ଜିର ଅନ୍ୟତମ ମୁଖ୍ୟ ଦାବି ହେଲା ବୀମା କ୍ଷେତ୍ରର ଉନ୍ମୁକ୍ତକରଣ। ଜୀବନ ବୀମା ଶିଳ୍ପର ବୈଶିଷ୍ଟ୍ୟ ହେଉଛି ଯେ ଏହା ଦୀର୍ଘ ମିଆଦୀ ସଞ୍ଚୟ ସଂଗ୍ରହ କରେ। ବିଗତ କେତେ ବର୍ଷ ଧରି ଭାରତ ବର୍ଷର ଜୀବନବୀମା ଶିଳ୍ପର ହାରାହାରି ବାର୍ଷିକ ଅଭିବୃଦ୍ଧି ୧୬% ହୋଇଛି। ଏହି ବିଶାଳ ସମ୍ଭାବନାପୂର୍ଣ୍ଣ ବଜାର ଉପରେ ବିଦେଶୀ ବହୁଜାତିକ କର୍ପୋରେସନ୍‌ମାନଙ୍କର ଲୋଲୁପ ଦୃଷ୍ଟି ପଡ଼ିଛି। ସେମାନେ ଏହି କ୍ଷେତ୍ରରେ ପ୍ରବେଶ କରି କେବଳ ଯେ ଭାରତୀୟ ବଜାରକୁ ଲୁଣ୍ଠନ କରିବାକୁ ଚାହାଁନ୍ତି ତାହା ନୁହେଁ। ସେମାନେ ଏହା ଦ୍ୱାରା ସମଗ୍ର ଦକ୍ଷିଣ ଏସିଆରେ ସେମାନଙ୍କର ଆଧିପତ୍ୟ ପ୍ରତିଷ୍ଠା କରିବାକୁ ଚାହାଁନ୍ତି। ଯୁକ୍ତରାଷ୍ଟ୍ର ଆମେରିକା ତା'ର ବାଣିଜ୍ୟ ଆଇନ୍‌ର ୩୦୯ ନମ୍ବର ଧାରା ପ୍ରୟୋଗର (ଅର୍ଥନୈତିକ ବାସନ୍ଦ) ଧମକ ଦେଇ ବୀମା କ୍ଷେତ୍ରର ଉନ୍ମୁକ୍ତକରଣ ପାଇଁ ଚାପ ପକାଉଥିଲା। ଭାରତ ସରକାର ଆମେରିକାର ଏହି ଚାପ ସାମନାରେ ମୁଣ୍ଡ ନୁଆଁଇଲେ ଏବଂ ଜନସାଧାରଣ ତଥା ସଂସଦ ଭିତରେ ଓ ବାହାରେ ବିଭିନ୍ନ ରାଜନୈତିକ ଦଳର ପ୍ରତିବାଦକୁ ଉପେକ୍ଷା କରି ବୀମା କ୍ଷେତ୍ରକୁ ବିଦେଶୀ ପୁଞ୍ଜିର ଅନୁପ୍ରବେଶ ପାଇଁ ଉନ୍ମୁକ୍ତ କରି ଦେଲେ। ଏହା ସପକ୍ଷରେ ଯେଉଁସବୁ ଯୁକ୍ତି ବଢ଼ାଯାଉଛି ତାହା ଭିତ୍ତିହୀନ। ଯୁକ୍ତି କରାଯାଉଛି,

ଏହା ଫଳରେ ବୀମା ଧାରୀ (customers) ମାନେ ଅଧିକ ସୁବିଧା ପାଇବେ, ବୀମା ବଜାର ସଂପ୍ରସାରିତ ହେବ ଏବଂ ଭିତ୍ତିଭୂମି କ୍ଷେତ୍ର (infrastructure)ରେ ବିନିଯୋଗ ନିମନ୍ତେ ସମ୍ବଳ ସଂଗ୍ରହ ସୁଗମ ହେବ। ଆହୁରି ଯୁକ୍ତି କରାଯାଉଛି ଯେ ବୀମା କ୍ଷେତ୍ର ଉନ୍ମୁକ୍ତ ହେଲେ ଦେଶରେ ବିଦେଶୀ ପୁଞ୍ଜି ବିନିଯୋଗ ଅଧିକ ହେବ। ସାଧାରଣ ବୀମା କ୍ଷେତ୍ରକୁ ଉନ୍ମୁକ୍ତ କରାଯିବା ସପକ୍ଷରେ କୁହାଗଲା ଯେ ବିଶ୍ୱ ଅର୍ଥନୀତି ସହିତ ଭାରତବର୍ଷର ଏକତ୍ରୀକରଣ ପାଇଁ ଏହା ଆବଶ୍ୟକ ଏବଂ ଏହା ଫଳରେ ଅନେକ ଅଭିନବ ବୀମା ସୁବିଧା (innovative instruments) ଉପଲବ୍ଧ ହେବ ଯାହାକି ଏବେ ଆମ ଦେଶରେ ନାହିଁ।

ବୀମା କ୍ଷେତ୍ର ଉନ୍ମୁକ୍ତ ହେବା ପରେ ଆମ ଦେଶରେ ଜୀବନ ବୀମାରେ ୧୨ଟି ଏବଂ ସାଧାରଣ ବୀମାରେ ୪ଟି ଯୌଥ ଉଦ୍ୟୋଗ କଂପାନୀ (joint venture companies) ବ୍ୟବସାୟ ଆରମ୍ଭ କରିଛନ୍ତି। ଏବେ ଏସବୁ କଂପାନୀରେ ବିଦେଶୀ ଅଂଶଧନ (foreign equity)ର ସର୍ବୋଚ୍ଚ ସୀମା ୨୬% ରହିଛି। ଏହି ସୀମାକୁ ବଢ଼ାଇବା ପାଇଁ ସରକାରଙ୍କ ଉପରେ ଚାପ ବୃଦ୍ଧି ପାଉଛି। ଏବେ ଏହି ସୀମାକୁ ୪୯%କୁ ବଢ଼ାଇବା ପାଇଁ ସରକାର ବିଚାର କରୁଛନ୍ତି ବୋଲି କେନ୍ଦ୍ର ଅର୍ଥମନ୍ତ୍ରୀ ସୂଚନା ଦେଇଛନ୍ତି। ଏହିପରି ଭାବେ ଧୀରେ ଧୀରେ ବିଦେଶୀ କଂପାନୀମାନେ ସଂଖ୍ୟାଗରିଷ୍ଠ ଅଂଶଧନର ଅଧିକାରୀ ହୋଇଗଲେ ସେଥିରେ ଆଶ୍ଚର୍ଯ୍ୟ ହେବାର କିଛି ନାହିଁ। ଏପରି ହେଲେ ଭାରତର ଅର୍ଥନୀତି ଉପରେ ଏହାର ସାଂଘାତିକ ପ୍ରଭାବ ପଡ଼ିବ। ଆଜି ବିଶ୍ୱବ୍ୟାପୀ ଲଗାଣ ପୁଞ୍ଜିର ତାଣ୍ଡବ ଚାଲିଛି। ସମଗ୍ର ବିଶ୍ୱରୁ ପୁଞ୍ଜି ସଂଗୃହୀତ ହେଉଛି। ମାତ୍ର ଏହାର ଚରିତ୍ର ହେଉଛି ଅସ୍ଥିର ଓ ଅସ୍ଥାୟୀ (foot-loose)। ପ୍ରତିମୁହୂର୍ତ୍ତରେ ଏହା ଅଧିକ ମୁନାଫାର ସନ୍ଧାନରେ ବ୍ୟସ୍ତ। ଫଳରେ ଆଖି ପିଛୁଳାକେ ଏହା ଗୋଟିଏ ଦେଶରୁ ଅନ୍ୟ ଏକ ଦେଶକୁ ଉଡାନ୍ ହୋଇ ଯାଉଛି। ତେଣୁ ଆମ ଦେଶରୁ ଏହି ବିରଳ ସଂପଦ (scarce capital) ବାହାରକୁ ଚାଲିଯିବାର ବାସ୍ତବ ବିପଦ ରହିଛି। ବୀମା କ୍ଷେତ୍ରର ଉନ୍ମୁକ୍ତକରଣର ପରବର୍ତ୍ତୀ ପଦକ୍ଷେପ ହେଉଛି ପୁଞ୍ଜି ଖାତାରେ ଭାରତୀୟ ମୁଦ୍ରାକୁ ବିନିମୟକ୍ଷମ (capital account convertibility) କରିବା ଯାହା ଫଳରେ ପୁଞ୍ଜିର ଅବାଧ ବିଚରଣ ସମ୍ଭବ ହେବ। ତେଣୁ ପୁଞ୍ଜି ଖାତାରେ ମୁଦ୍ରାର ବିନିମୟକ୍ଷମ ବ୍ୟବସ୍ଥା ଚାଲୁ କରିବା ପାଇଁ ସରକାରଙ୍କ ଉପରେ ଚାପ ବୃଦ୍ଧି ପାଇବାରେ ଲାଗିଛି।

ବୀମା କ୍ଷେତ୍ରରେ ଉନ୍ମୁକ୍ତକରଣ ଅନେକ ପ୍ରଶ୍ନ ହାଜର କରିଛି। ଜାତୀୟକରଣ ସମୟରେ ଘୋଷିତ ଲକ୍ଷ୍ୟର ଆଉ କ'ଣ ପ୍ରାସଙ୍ଗିକତା ନାହିଁ? ଦୁର୍ବଳ ବର୍ଗର ଜନସାଧାରଣଙ୍କ ଉପରେ ଏହାର କି ପ୍ରଭାବ ପଡ଼ିବ? ବୀମାଧାରୀମାନଙ୍କର ସଞ୍ଚୟ କେତେ ଦୂର ସୁରକ୍ଷିତ ରହିବ? ବୀମାଧାରୀମାନଙ୍କର ସଞ୍ଚୟକୁ ସୁରକ୍ଷିତ ରଖିବା ଏବଂ ଭିତ୍ତିଭୂମି କ୍ଷେତ୍ର ଓ ସାମାଜିକ ଉନ୍ନୟନ ନିମନ୍ତେ ରିହାତି ସୁଧରେ ଦୀର୍ଘ ମିଆଦୀ ପୁଂଜି ଯୋଗାଣ କରିବା ଲକ୍ଷ୍ୟରେ ୧୯୫୬ରେ ଜୀବନବୀମା ବ୍ୟବସାୟ ଜାତୀୟକରଣ କରାଯାଇଥିଲା। ସାଧାରଣ ବୀମା ବ୍ୟବସାୟର ଜାତୀୟକରଣ ହୋଇଥିଲା ୧୯୭୨ରେ। ରାଷ୍ଟ୍ରାୟତ୍ତ ବୀମା ଶିଳ୍ପ (ଉଭୟ ଏଲ୍.ଆଇ.ସି. ଓ ଜି.ଆଇ.ସି.) ପଞ୍ଚବାର୍ଷିକ ଯୋଜନାଗୁଡିକର ସଫଳ ରୂପାୟନ ଏବଂ ସମାଜ କଲ୍ୟାଣମୂଳକ ଯୋଜନାଗୁଡ଼ିକର କାର୍ଯ୍ୟକାରୀତାରେ ପ୍ରମୁଖ ଭୂମିକା ପାଳନ କରି ଆସୁଛନ୍ତି। ଅତି କମ୍ ସୁଧରେ ଏଥିଲାଗି ପୁଞ୍ଜି ଯୋଗାଇ ଚାଲିଛନ୍ତି। ଆଜି ଏଲ୍.ଆଇ.ସି.ର ମୋଟ ବିନିଯୋଗକ୍ଷମ ପୁଞ୍ଜି (investible funds)ର ପରିମାଣ ପ୍ରାୟ ୨ ଲକ୍ଷ କୋଟି ଟଙ୍କା ଏବଂ ଏହାର ପ୍ରାୟ ୮୫% ବିନିଯୋଗ ହୋଇଛି ସରକାରୀ ଅଂଶଧନ (govt.securities)ରେ ଏବଂ ସାମାଜିକ କ୍ଷେତ୍ରରେ। ଉଭୟ ଏଲ୍.ଆଇ.ସି. ଓ ଜି.ଆଇ.ସି. ଅତି ସଫଳତାର ସହିତ କାର୍ଯ୍ୟ କରୁଛନ୍ତି। ଦେଶର ଦୁର୍ବଳ ବର୍ଗର ଜନସାଧାରଣଙ୍କୁ ବୀମା ସୁରକ୍ଷା ପ୍ରଦାନ କରୁଛନ୍ତି। ଆଜି ଏଲ୍.ଆଇ.ସି.ର ୫୦%ରୁ ଅଧିକ ବ୍ୟବସାୟ ଆସୁଛି ଗ୍ରାମାଞ୍ଚଳରୁ। ଜାତୀୟକରଣ ପୂର୍ବରୁ ଏହି ଗ୍ରାମାଞ୍ଚଳ ବୀମା ସୁବିଧା ପାଇବାରୁ

ସଂପୂର୍ଣ୍ଣରୂପେ ବଞ୍ଚିତ ହୋଇ ରହିଥିଲା। ଉଭୟ ଏଲ୍.ଆଇ.ସି. ଓ ଜି.ଆଇ.ସି.ର ବୀମାଧାରୀମାନଙ୍କୁ ସେବା ପ୍ରଦାନର ମାନ ବିଶ୍ୱର ସର୍ବୋତ୍କୃଷ୍ଟମାନ ସହିତ ତୁଳନୀୟ।

ଦୁର୍ବଳ ବର୍ଗର ଜନସାଧାରଣଙ୍କ ଉପରେ ବୀମା କ୍ଷେତ୍ରର ଉନ୍ମୁକ୍ତକରଣର କି ପ୍ରକାର ପ୍ରଭାବ ପଡ଼ିବ? କମ୍ ରାଶିର ବୀମା ପଲିସି ଏବଂ ଗ୍ରାମାଞ୍ଚଳର ବୀମା ବ୍ୟବସାୟ ସବ୍‌ସିଡି ଉପରେ ନିର୍ଭରଶୀଳ। (ଏ ସବ୍‌ସିଡି କୌଣସି ସରକାରୀ ସବ୍‌ସିଡି ନୁହେଁ। ଅଧିକ ରାଶିର ପଲିସି ଓ ସହରାଞ୍ଚଳର ପଲିସିରୁ ମିଳୁଥିବା ଅପେକ୍ଷାକୃତ ଅଧିକ ଲାଭରୁ ଏହି ସବ୍‌ସିଡି ଭରଣା ହୋଇଥାଏ।) ପ୍ରତିଯୋଗିତା ସାମନାରେ ଏହି ସବ୍‌ସିଡି ବନ୍ଦ ହୋଇଯିବ। ଦୁର୍ବଳ ବର୍ଗର ଲୋକେ ବୀମା ସୁବିଧା ପାଇବାରୁ ବଞ୍ଚିତ ହେବେ। ଏବେ ଏଲ୍.ଆଇ.ସି. ବିଭିନ୍ନ ଗୋଷ୍ଠୀ ବୀମା ଯୋଜନା (Group Insurance Schemes) ଜରିଆରେ ଦୁର୍ବଳ ବର୍ଗର ଜନସାଧାରଣଙ୍କୁ ବୀମା ସୁରକ୍ଷା ପ୍ରଦାନ କରୁଛି। ଦ୍ୱିତୀୟତଃ ବୀମା କଂପାନୀଗୁଡ଼ିକ ସହରାଞ୍ଚଳର ଧନୀକ ଗୋଷ୍ଠୀଙ୍କୁ ଗୁରୁତ୍ୱ ପ୍ରଦାନ କରିବା ଯୋଗୁଁ ଗ୍ରାମାଞ୍ଚଳର ଲୋକେ ବୀମା ସୁବିଧା ପାଇବାରୁ ବଞ୍ଚିତ ହେବେ। ବୀମା କ୍ଷେତ୍ର ଉନ୍ମୁକ୍ତ ହେବା ପରେ ସରକାରୀ ଅଂଶଧନ ଓ ସମାଜ କଲ୍ୟାଣମୂଳକ କ୍ଷେତ୍ରରେ ୭୫% ଅର୍ଥ ବିନିଯୋଗ କରିବା ପାଇଁ ଥିବା ଆଇନ୍‌ଗତ ବାଧ୍ୟବାଧକତାକୁ ୫୦%କୁ ହ୍ରାସ କରି ଦିଆଯାଇଛି। ଫଳରେ ସାମାଜିକ କ୍ଷେତ୍ର ଓ ଭିତ୍ତିଭୂମି କ୍ଷେତ୍ର ସବୁଠାରୁ ବେଶି କ୍ଷତିଗ୍ରସ୍ତ ହେବ। ବୀମାଧାରୀମାନଙ୍କୁ ଅଧିକ ସୁବିଧା ଦେବା ଲାଗି ଅନୈତିକ ପ୍ରତିଯୋଗିତା ବଢ଼ିବ। ଏହାଫଳରେ ବୀମା କଂପାନୀଗୁଡ଼ିକ ପୁଂଜି ବିନିଯୋଗ ପାଇଁ ଅଧିକରୁ ଅଧିକ ଷ୍ଟକ୍ ମାର୍କେଟ୍ ଆଡକୁ ମୁହାଁଇବେ। ଫଳରେ ବୀମାଧାରୀମାନଙ୍କର ସଞ୍ଚୟ ଅର୍ଥର ଭବିଷ୍ୟତ ବିପଦ ସଂକୁଳ ଓ ଅନିଶ୍ଚିତ ହୋଇ ପଡ଼ିବ।

## ଅନ୍ୟାନ୍ୟ କୁପ୍ରଭାବ:

ଆନ୍ତର୍ଜାତୀୟ ଲଗାଣ ପୁଂଜିର ସ୍ୱାର୍ଥରେ ଓ ନିର୍ଦ୍ଦେଶରେ ପ୍ରଣୀତ ଏହି ନବ୍ୟ ଉଦାର ଅର୍ଥନୀତିର ଅନ୍ୟାନ୍ୟ ବହୁ କୁପ୍ରଭାବ ରହିଛି।

- ଆନ୍ତର୍ଜାତୀୟ ପୁଂଜିର କୌଣସି ଭୌଗଳିକ ସୀମାରେଖା ନାହିଁ କିମ୍ବା କୌଣସି ଦାୟବଦ୍ଧତା ନାହିଁ। ଏହାର ଆକ୍ରମଣରେ ଜାତି-ରାଷ୍ଟ୍ର (nation-states) ଗୁଡ଼ିକର କୌଣସି ନିୟନ୍ତ୍ରଣକାରୀ ବା ନୀତି ନିର୍ଦ୍ଧାରଣକାରୀ ଭୂମିକା ରହିବ ନାହିଁ।
- ଏହା ଫଳରେ ଗଣତନ୍ତ୍ର ଓ ଗଣତାନ୍ତ୍ରିକ ଅଧିକାର ବିପନ୍ନ ହେବ।
- ଆର୍ଥିକ କ୍ଷେତ୍ରରେ ସଂସ୍କାର ବିପୁଳ ସଂଖ୍ୟାଗରିଷ୍ଠ ଲୋକଙ୍କର ଜୀବନ ଧାରଣର ମାନକୁ ସାଂଘାତିକ ଭାବେ ନିମ୍ନଗାମୀ କରିଛି। ଭାରତୀୟ ଅର୍ଥନୀତିକୁ ଆନ୍ତର୍ଜାତୀୟ ଲଗାଣ ପୁଂଜିର ଅବାଧ ଲୁଣ୍ଠନ ଓ ଶୋଷଣ ମୁହଁକୁ ଠେଲି ଦେଇଛି। ଆର୍ଥିକ କ୍ଷେତ୍ର, ଅର୍ଥନୀତିରେ ଏକ ପ୍ରମୁଖ ଭୂମିକା ପାଳନ କରେ। ଆର୍ଥିକ ସଂସ୍ଥାମାନଙ୍କ ଜରିଆରେ ରାଷ୍ଟ୍ର ସମ୍ବଳ ସଂଗ୍ରହ କରେ ଏବଂ ସାମାଜିକ ନ୍ୟାୟ ପ୍ରତିଷ୍ଠା ନିମନ୍ତେ ଯଥୋଚିତ ବ୍ୟୟ ବରାଦ କରିବାରେ ସରକାରଙ୍କ ପାଇଁ ଏହା ସହାୟକ ହୁଏ। ଆର୍ଥିକ କ୍ଷେତ୍ରର ସଂସ୍କାର ଫଳରେ ସରକାର ଏହି ଭୂମିକା ପାଳନ କରିବାରେ ବ୍ୟର୍ଥ ହେବେ। ଆମ ଦେଶରେ ବ୍ୟାପକ ସଂଖ୍ୟାଗରିଷ୍ଠ ଲୋକେ ସର୍ବନିମ୍ନ ସୁବିଧା ପାଇବାରୁ ବଞ୍ଚିତ। ଏହି ପରିସ୍ଥିତିରେ ଏହାର ବିଷମୟ ପରିଣତି ସହଜରେ ଅନୁମେୟ।
- ବୀମା ଓ ବ୍ୟାଙ୍କ କ୍ଷେତ୍ରରେ ଘରୋଇକରଣ ଜାତୀୟ ଅର୍ଥନୀତିକୁ ପୁଂଜି ସଂଗ୍ରହ (capital accumulation)ର ଏକ ଆକର୍ଷଣୀୟ ଉତ୍ସରୁ ବଞ୍ଚିତ କରିଛି। ଜନସାଧାରଣଙ୍କ ସଞ୍ଚୟ ଅର୍ଥକୁ ଘରୋଇ ଓ ବିଦେଶୀ ପୁଂଜିପତିଙ୍କ ହାତରେ ସମର୍ପି ଦିଆଯାଉଛି। ଏହା ଫଳରେ ସଞ୍ଚୟକାରୀଙ୍କ ସଞ୍ଚୟ ନିରାପଦ ନୁହେଁ କିମ୍ବା

ଏହା ଜାତୀୟ ଅର୍ଥନୀତି ପାଇଁ ଶୁଭଙ୍କର ନୁହେଁ। ଭିତ୍ତିଭୂମି କ୍ଷେତ୍ରର ଅନେକ ବିଭାଗରୁ ରାଷ୍ଟ୍ର ଓହରି ଯିବା ଫଳରେ ସାଧାରଣ ସେବା (public services) ବ୍ୟୟସାଧ୍ୟ ହୋଇ ପଡୁଛି। ଗରିବ, ମଧ୍ୟବିତ୍ତ ଲୋକେ ବିଶେଷ ଭାବେ କ୍ଷତିଗ୍ରସ୍ତ ହେଉଛନ୍ତି। ଶିକ୍ଷା, କର୍ମଯୋଗାଣ, ଆଞ୍ଚଳିକ ବୈଷମ୍ୟ ଦୂରୀକରଣ ଆଦି ବାବଦରେ କ୍ରମାଗତ ଭାବେ ବ୍ୟୟ ବରାଦ ହ୍ରାସ ହେବା ଦେଶ ପାଇଁ ଭୟଙ୍କର କ୍ଷତିକାରକ। ତେଣୁ ଭାରତର ଜନସାଧାରଣ ଓ ଜାତୀୟ ଅର୍ଥନୀତିର ସ୍ୱାର୍ଥର ବିନିମୟରେ ଆନ୍ତର୍ଜାତୀୟ ଲଗାଣ ପୁଞ୍ଜିର ସ୍ୱାର୍ଥରେ ହେଉଥିବା ଆର୍ଥିକ କ୍ଷେତ୍ରର ସଂସ୍କାରକୁ ବିରୋଧ କରିବା ଉଚିତ୍।

● ରବିନାରାୟଣ ମଲ୍ଲିକ